# ହିତୋପଦେଶ ।

(ପଦ୍ୟ)

—:o:—

{ ବିଳମ୍ବ ନ କର କ୍ଷଣେ
{ ପଢ ଏହା ବିଜ୍ଞଜନେ }

—:○:—

ଶ୍ରୀ ଗୋବନ ରଥଙ୍କ ଦ୍ୱାରା ପ୍ରକାଶିତ ।

CUTTACK:

PRINTED AT THE ORISSA MISSION PRESS.

1896.

mula 80 7/

extra

# ହିତୋପଦେଶ ।

——ଃ-୦-ଃ——

ରାଗ—ବଙ୍ଗଳାଶ୍ରୀ ।

ପ୍ରଥମେ ଶିବଙ୍କୁ ନମସ୍କାର କରି ହିତୋପଦେଶ ସଂସ୍କୃତ ।
ବିସ୍ତାରେଣ ଗଦ୍ୟପଦର ମିଶ୍ର ଭାଷା ପ୍ରବନ୍ଧରେ କଲେ ଗୀତ । ୧ ।
ଗ୍ରନ୍ଥ ମୂଳେ ବିପ୍ର ନାରାୟଣ କରିଅଛନ୍ତି ମଙ୍ଗଳାଚରଣ ।
ଆଶଂସାରୂପରେ ନିର୍ବିଘ୍ନେ ଗ୍ରନ୍ଥର ସମାପ୍ତି ରୂପରେ ଶୁଣ । ୨ ।

ଯାର ମୁଣ୍ଡେ ଗଙ୍ଗାଫେନ ଲେଖା ପ୍ରାୟେ ବିରାଜେ ଶଶୀ ସକଳ ।
ସେ ଗଙ୍ଗାଧର ପ୍ରସାଦରୁ ସାଧୁଙ୍କ ସାଧ୍ୟ ହେଉ ସିଦ୍ଧ ଫଳ । ୩ ।
ଏ ହିତୋପଦେଶ ଶୁଣିଲେ ମାଏଁକେ ସବୁ ସଂସ୍କୃତ ଜାଣଇ ।
ସର୍ବ ବିଷୟରେ ବଚନ ଚାତୁରୀ ରାଜନୀତି ବିଦ୍ୟା ହୋଇ । ୪ ।

ଅଜର ଅମର ପ୍ରାୟେ ବୁଦ୍ଧିମନ୍ତ ଧନ ବିଦ୍ୟା ଅରଜିବ ।
ମୃତ୍ୟୁ ସର୍ବଦା ମୃତ୍ୟୁଗ୍ରସ୍ତ ବିଚାରି ଧର୍ମାଚରଣ କରିବ । ୫ ।
ସବୁ ଦ୍ରବ୍ୟମାନଙ୍କରେ ବିଦ୍ୟାଦ୍ରବ୍ୟ ଉତ୍ତମ ବୋଲି ସେ କହି ।
ସବୁକାଳେ କେହି ନ ପାରଇ ନେଇ ଅମୂଲ୍ୟ ଅକ୍ଷୟ ସେହି । ୬ ।

ବିଦ୍ୟା ପଢିଲେ ଯେ ବିନୟୀ ହୁଅଇ ବିନୟୀରୁ ହୁଏ ଯୋଗ୍ୟ ।
ଯୋଗ୍ୟପଣରୁ ଜ୍ଞାନ ପୂର୍ଣ୍ଣ ହୁଅଇ ଜ୍ଞାନ ହେଲେ ମୋକ୍ଷ ଭୋଗ୍ୟ । ୭ ।
ନୀଚଗତ ବିଦ୍ୟା ନରକୁ ସମର୍ଥ ନୃପକୁ ଭେଟ କରାଇ ।
ଯେସନେ ନୀଚଗତ ସରିତ ଜଳକୁ ସମୁଦ୍ର ପ୍ରବେଶ ଦେଇ । ୮ ।

ଶାସ୍ତ୍ର ବିଦ୍ୟା ଶସ୍ତ୍ର ବିଦ୍ୟା ଏ ଯୋଡିଏ ପ୍ରାଣରକ୍ଷକ ଜନର ।
ଶସ୍ତ୍ର ବିଦ୍ୟା ବୃଦ୍ଧକାଳେ ହାସ୍ୟକର ଶାସ୍ତ୍ରେ ସର୍ବଦା ଆଦର । ୯ ।
ନୂତନ ପାଏଁରେ ସଂସ୍କାର ହୋଇଲେ କେବେହେଁ ଅନ୍ୟଥା ନୋହି ।
ବାଳକମାନଙ୍କୁ କଥା କପଟରେ ରାଜନୀତି ବିଦ୍ୟା କହି । ୧୦ ।

ମିତ୍ର ଲାଭ ଯେ ସୁହୃଦ୍‌ଭେଦ ବିଗ୍ରହ ସନ୍ଧି ଗୃହ କଥା ଅଛୁ ।
ପଞ୍ଚ ତନ୍ତ୍ର ଅନ୍ୟ ଗ୍ରନ୍ଥମାନଙ୍କରୁ ବାଛୁ କରି ଲେଖୁ ଅଛୁ । ୧୧ ।
ଗଙ୍ଗା ତୀରରେ ପାଟଳି ପୁତ୍ର ବୋଲି ଏକ ନଗର ସେ ଥିଲା ।
ତହିଁରେ ପ୍ରଭୁ ସର୍ବଗୁଣ ସମ୍ପନ୍ନ ସୁଦର୍ଶନ ରାଜା ହେଲା । ୧୨ ।

ତାହାର ସୁନ୍ଦର ଯୌବନ ସମ୍ପନ୍ନ ଅଷ୍ଟାଦଶ ପୁତ୍ର ହେଲେ ।
ଦିନେ ସେହି ରାଜା କେହି ପଢୁଥିଲା ଯୋଡ଼ଏ ଶ୍ଳୋକ ଶୁଣିଲେ । ୧୩ ।
ଅନେକ ସନ୍ଦେହ ଛିଣ୍ଡାଇ ଦୂରସ୍ଥ ଦ୍ରବ୍ୟ ଦର୍ଶନ କରାଇ ।
ଶାସ୍ତ୍ର ସେ ସମସ୍ତ ଜନଙ୍କ ଲୋଚନ ନ ଥିଲେ ଅନ୍ଧ ବୋଲାଇ । ୧୪ ।

ଯଉବନ ଧନ ଅବିବେକପଣ ପ୍ରଭୁତ୍ୱ ଗୃହ ଅନର୍ଥ ।
ଗୋଟିକେ ଗୋଟିକେ ସବୁ ଯାହାଠାରେ କି କହିବା ସେ ଅପାର୍ଥ । ୧୫ ।
ଏମନ୍ତେ ଶୁଣିଣ ସେ ରାଜା ମୂରୁଖ ପୁତ୍ରଙ୍କର ଉପଦେଶ ।
କିରୂପେ ହୋଇବ ଏମନ୍ତ ବିଚାରୁଁ ଚିନ୍ତା ହୋଇଲା ପ୍ରବେଶ । ୧୬ ।

ବିଦ୍ୟାବନ୍ତ ଧନବନ୍ତ ଯେ ନୁହଇ ସେ ପୁତ୍ର ନୁହଇ କିଛୁ ।
ଚକ୍ଷୁ କଣା ହେଲେ ତହିଁରୁ କି କାର୍ଯ୍ୟ ବଡ଼ ନେତ୍ର ଦୁଃଖ ଅଛୁ । ୧୭ ।
ଯେଉଁ ପୁତ୍ର ଜାତ ହେଲେ ବଂଶେ କୀର୍ତ୍ତି ଜାଣ ସେହି ପୁତ୍ର ଜାତ ।
ଅନିତ୍ୟ ସଂସାରେ ପୁଣି ପୁଣି ଜନ୍ମ ହୋଇ କେ ନୁହଇ ମୃତ । ୧୮ ।

ଏକ ପୁତ୍ର ବିଦ୍ୟାଯୁକ୍ତ ସାଧୁ ହେଲେ ଆପଣା କୁଳ ପ୍ରକାଶ ।
କରଇ ଚନ୍ଦ୍ର ଯେଭେ ଏକା ହୋଇ ସେ ସମସ୍ତ ଦ୍ରବ୍ୟକୁ ହାସ୍ୟ । ୧୯ ।
ଦାନ ତପସ୍ୟା ଶୂରପଣ ବିଦ୍ୟାରେ ଧନ ଲାଭରେ ଯାହାର ।
କୀର୍ତ୍ତି ପ୍ରକାଶ ନୁହଇ ସେହି ଜାଣ କେବଳ ମାତ୍ର ଉଚ୍ଚାର । ୨୦ ।

ଗୁଣି ଗଣଙ୍କ ଗଣନା ସମୟରେ ଯା ନାମ ଗଣନା ନୋହି ।
ଏପୁତ୍ରରେ ମାତା ପୁତ୍ରବତୀ ଯେବେ ବନ୍ଧ୍ୟା ବୋଲି ତାକୁ କହି । ୨୧ ।
ପୁଣ୍ୟ ତୀର୍ଥେ ତପ ଦୁଷ୍କର କର୍ମ୍ମରେ ଅଛୁ ଉଦ୍ୟମ ଯାହାର ।
ସମୃଦ୍ଧ ଧାର୍ମ୍ମିକ ଶୁଚିବନ୍ତ ବଶ୍ୟ ପୁତ୍ର ହୁଅଇ ତାହାର । ୨୨ ।

ନିତ୍ୟ ଧନାର୍ଜ୍ଜନ ଅରୋଗ୍ୟ ସ୍ୱଭାର୍ଯ୍ୟା ପ୍ରିୟ କରେ ପ୍ରିୟ କହେ ।
ପୁତ୍ର ବଶ ବିଦ୍ୟା ଅର୍ଥକରୀ ଏତ ସର୍ବଜନ ହିତ ହୁଏ । ୧୩ ।
କିରୂପେ ବର୍ତ୍ତମାନରେ ମୋର ପୁତ୍ରମାନେ ହେବେ ଗୁଣବନ୍ତ ।
ଆଉ ବିଷୟ ମନରେ ଅଭିପୃଚ୍ଛ କହିବା ପୁଣି ଉଦନ୍ତ । ୧୪ ।

ଆୟୁଷ କର୍ମ୍ମ ଧନ ବିଦ୍ୟା ମରଣ ପଞ୍ଚ ପ୍ରକାର ଏ ଜାଣ ।
ଗର୍ଭେ ଥିଲାବେଳେ ସର୍ବ ଜନ୍ତୁଙ୍କର ସର୍ଜ୍ଜନା କରେ ବ୍ରହ୍ମଣ । ୧୫ ।
ଯେ ବଡ ଲୋକ ତାହାର ହେବା କଥା ଅବଶ୍ୟ ହୁଅଇ ଜାଣ ।
ନୀଳକଣ୍ଠ ଦିଗମ୍ବର ହରଙ୍କର ମହା ସର୍ପରେ ଶୟନ । ୧୬ ।

ଯେ ହେବା କଥା ସେ ହୋଇବ ନୋହିବା କଥା ନୋହିବ ସେ ଜାଣ ।
ଏହି ବାକ୍ୟ ଚିନ୍ତା ବିଷଘ୍ନ ଔଷଧ ସର୍ବଜନଙ୍କର ପାନ । ୧୭ ।
ଯେଉଁମାନେ କାର୍ଯ୍ୟ କରି ନ ପାରନ୍ତି ଏହା ବୋଲନ୍ତି ସେମାନେ ।
ଉଦ୍ୟମ ନ କଲେ ନୋହେ କାର୍ଯ୍ୟ ସିଦ୍ଧି ଦୃଷ୍ଟାନ୍ତ ଶୁଣ ବିଧାନେ । ୧୮ ।

ଯେହ୍ନେ ଏକ ଚକ୍ରଯୁକ୍ତ ହେଲେ ରଥ ଗମନ କେବେହେଁ ନୋହି ।
ତେହ୍ନେ ଦୈବ କର୍ମ୍ମ ବିନା ଉଦ୍ୟମରେ କେବେହେଁ ସିଦ୍ଧ ନୁହଇ । ୧୯ ।
ପୂର୍ବ ଜନ୍ମରେ ଅର୍ଜ୍ଜିତ ଯେଉଁ କର୍ମ୍ମ ତାହାକୁ ବୋଲି ଦଇବ ।
ସେହି ହେତୁରୁ ସମସ୍ତ ଜନମାନେ କାର୍ଯ୍ୟେ ଉଦ୍ୟମ କରିବ । ୨୦ ।

ଯେହ୍ନେ କୁମ୍ଭକାର ମୃତ୍ତିକା ପିଣ୍ଡରୁ ଯାହା ଯାହା ଇଚ୍ଛା କରେ ।
ତାହା କରଇ ସେରୂପେ ଆମ୍ଭ କର୍ମ୍ମ ଲଭନ୍ତି ସମସ୍ତ ନରେ । ୨୧ ।
କାକତାଳ ସଙ୍ଗ ଭୋଗ ପ୍ରାପ୍ତ ଧନ ଲାଭକୁ ଯେବେ ଦେଖିବ ।
ଦଇବ ପ୍ରମାଣ ବୋଲି ପୁରୁଷାର୍ଥ ଯତ୍ନ କେବେ ନ ଛାଡିବ । ୨୨ ।

ଦଇବ ପ୍ରମାଣ ବୋଲି କଦାଚିତେ ଯତ୍ନ ନ ଛାଡେ ଆପଣ ।
ଉଦ୍ୟୋଗ ନ କରି ତିଲମାନଙ୍କରୁ ତୈଳ ପାଏ କେଉଁ ଜନ । ୨୩ ।
ଉଦ୍ୟମରୁ ଧନ ହୁଅଇ ନିଶ୍ଚିତ ଯତ୍ନ ବିନା ଫଳ କାହିଁ ।
ଶୋଇଲା ସିଂହର ମୁଖରେ କି ମୃଗ ଆମ୍ଭ ଇଚ୍ଛାରେ ପଶଇ । ୨୪ ।

ଯେଉଁ ମାତାପିତା ନ ପଢାଇ ପୁତ୍ର ସେ ପୁତ୍ରର ଶତ୍ରୁ ଜାଣ ।
ହଂସ ମଧ୍ୟରେ ବକପ୍ରାୟ ସେ ପୁତ୍ର ସଭା ମଧ୍ୟେ ଅଶୋଭନ । ୩୫ ।
ଏମନ୍ତ ବୋଲନ୍ତେ ସେ ନୃପକେଶରୀ କଲେ ପଣ୍ଡିତଙ୍କ ସଭା ।
ହସ୍ତ ଯୋଡଣ ନମସ୍କାର କରଣ ପଚ୍ଛୁଛନ୍ତି ହୋଇ ଉଭା । ୩୬ ।

ଅହେ ହେ ପଣ୍ଡିତମାନେ ତୁମ୍ଭ ମଧ୍ୟେ କେହି ଅଛ କି ଏମନ୍ତ ।
ଉନ୍ମାର୍ଗଗାମୀ ମୋର ପୁତ୍ରମାନଙ୍କୁ ଯେ କରିବ ନୀତିବନ୍ତ । ୩୭ ।
ହୀନ କାଚର କାଞ୍ଚନ ସଙ୍ଗତରେ ମରକତ ଦ୍ୟୁତି ହୋଇ ।
ଯେରୂପେ ସେରୂପେ ପଣ୍ଡିତ ସଂସର୍ଗେ ମୂର୍ଖ ପଣ୍ଡିତ ହୁଅଇ । ୩୮ ।

କହୁଥାଇ ଶୁଣ ହୀନ ସମାଗମେ ହୀନ ବୁଦ୍ଧି ହୋଇ ଯାଇ ।
ସମସଙ୍ଗମେ ସମଭାବ ଭଜଇ ଶ୍ରେଷ୍ଠ ସଙ୍ଗେ ଶ୍ରେଷ୍ଠ ହୋଇ । ୩୯ ।
ଏକା ଜଳ ତପ୍ତ ଲୌହରେ ପଡଲେ ତାସ୍ୱରୂପ ନୃତ ଯାଇ ।
ପଦ୍ମ ପତ୍ରରେ ମୁକ୍ତାପ୍ରାଏ ଦିଶଇ ଶୁକ୍ତି ଗର୍ଭେ ମୁକ୍ତା ହୋଇ । ୪୦ ।

ପ୍ରାୟେଣ ଅଧମ ମଧ୍ୟମ ଉତ୍ତମ ଗୁଣ ସଂସର୍ଗରୁ ହୋଇ ।
ତୁମ୍ଭମାନଙ୍କ ସଂସର୍ଗେ ପୁତ୍ରମାନେ ଭଲ ହେବେ ବୋଲି କହି । ୪୧ ।
ଅସାଧୁ ସଙ୍ଗେ ନ ବସିବ କଦାପି ନ ଚଳିବ ସଙ୍ଗେ ବାଟ ।
ସୁଣ୍ଡି ଥିଣି ହସ୍ତେ କ୍ଷୀର ଧରିଥିଲେ ବୋଲନ୍ତି ଏ ମଦ ଘଟ । ୪୨ ।

ତାହାଙ୍କ ସଙ୍ଗରେ ବିଷ୍ଣୁଶର୍ମା ବୋଲି ସକଳ ଶାସ୍ତ୍ର ପଣ୍ଡିତ ।
ବୃହସ୍ପତି ସମ ରାଜାଙ୍କୁ କହିଲେ ତଥ୍ୟ ବାକ୍ୟ ଅଖଣ୍ଡିତ । ୪୩ ।
ହେ ଦେବ ଏପୁତ୍ରେ ମହାକୁଳ ଜନ୍ମା ରାଜନୀତି ଉପଦେଶ ।
କରାଇବ ମୁହିଁ ଛମାସ ମଧ୍ୟରେ କରିବା ହେଉ ନିର୍ଦ୍ଦେଶ । ୪୪ ।

ମାତା ପିତା ଦୁହିଙ୍କର ଯତ୍ନ ହେଲେ ଗୁଣବନ୍ତ ହୁଏ ସୁତ ।
ଗର୍ଭରୁ ଜନମ ମାତ୍ରେ ମାନବ କଦା ହୁଅଇ ପଣ୍ଡିତ । ୪୫ ।
ଅଯୋଗ୍ୟ କର୍ମ ଫଳବନ୍ତ ନୁହଇ ଉତ୍ତମ ଯୋଗ୍ୟ ଫଳଇ ।
କେବେହେଁ ଶୁକ ପ୍ରାୟ ବକ ପଢିବ କାହାର କଣ୍ଠାସ ହୋଇ । ୪୬ ।

ଏତେ ଗୁଣବନ୍ତ କୁଳରେ ଜନମ ନିର୍ଗୁଣ ସୁତ କି ହୁଏ ।
ପଦ୍ମରାଗ ଜନ୍ମ ସ୍ଥାନରେ ଜନମ୍ କିବା କାଚ ମଣି ହୁଏ । ୪୭ ।
ଏହିହେତୁରୁ ତୁମ୍ଭ ପୁତ୍ରମାନଙ୍କ ଛମାସ୍ ମଧ୍ୟରେ ନୀତି ।
ଉପଦେଶ ଦେବି ଏଥିରେ ସନ୍ଦେହ ନ କର ନୃପତି ପତି । ୪୮ ।
ରାଜା ସନ୍ତୋଷ ହୋଇ ପୁଣି କହେ କୀଟ ପୁଷ୍ପ ସଙ୍ଗ ପାଇ ।
ବଡ ଲୋକ ମୁଣ୍ଡ ଉପରେ ବସଇ ପଥର ଦେବତା ହୋଇ । ୪୯ ।
ଯେମନ୍ତେ ଉଦୟ ପର୍ବତେ ଦ୍ରବ୍ୟଜାତ ସୂର୍ଯ୍ୟ ସଙ୍ଗେ ଶୋଭା ପାଇ ।
ସେରୂପେ ହୀନରୂପ ସାଧୁ ସଙ୍ଗରେ ମହା ପ୍ରକାଶ ଲଭଇ । ୫୦ ।
ଗୁଣମାନେ ସବୁ ଗୁଣବନ୍ତଠାରେ ପଡିଲେ ଗୁଣ ହୁଅନ୍ତି ।
ନିର୍ଗୁଣଠାରେ ଦୋଷରୂପେ ରହନ୍ତି ଅବ୍ଧି ନଦୀ ଜଳ ରୀତି । ୫୧ ।
ଏମନ୍ତ ବିଷ୍ଣୁଶର୍ମାଙ୍କୁ କହି ରାଜା ପୁଏଙ୍କୁ ସମର୍ପି ଦେଲେ ।
ଏହାଙ୍କ ବଚନେ ନୀତିଶାସ୍ତ୍ର ଜ୍ଞାନେ ତୁମ୍ଭେ ପ୍ରମାଣ ବୋଇଲେ । ୫୨ ।
ଏଥୁଅନନ୍ତରେ ପ୍ରାସାଦ ଉପରେ ରାଜ ପୁଏଙ୍କୁ ବସାଇ ।
ତାହାଙ୍କ ଅଗ୍ରରେ ବିଷ୍ଣୁଶର୍ମା ବିପ୍ର କହନ୍ତି କଥା ଗଢାଇ । ୫୩ ।
କାବ୍ୟଶାସ୍ତ୍ର ବିନୋଦରେ ରାଜପୁଏ କାଳ ଯାଏ ପଣ୍ଡିତର ।
ବ୍ୟସନ ନିଦ୍ରା କଳହ କର୍ମ କରି କାଳ ଯାଉଛି ମୂର୍ଖର । ୫୪ ।
ତୁମ୍ଭମାନଙ୍କର କୌତୁକ ନିମନ୍ତେ କାକ କୂର୍ମ ମୂଷା ମୃଗ ।
ଏହାଙ୍କ ବଟିଏ କଥାକୁ କହିବି ଶୁଣ ରାଜପୁଏ ବେଗ । ୫୫ ।
ମିତ୍ରଲାଭ କଥା ପ୍ରଥମେ କହିବା ତାହାର ପ୍ରଥମ ଶ୍ଳୋକ ।
ଅର୍ଥ କରି କହୁଥାଇ ମନେ ଧରି ବିଚାର କର ଅନେକ । ୫୬ ।
ଧନସାଧନ ନ ଥାଇ ବୁଦ୍ଧିବଳେ ସୁମିତ୍ର ଧର୍ମ କରଣ ।
କାକ କୂର୍ମ ମୃଗ ମୂଷିକ ଏମାନେ କାର୍ଯ୍ୟ ସିଦ୍ଧ କଲେ ଶୁଣ । ୫୭ ।
ଏହା ଶୁଣି ରାଜପୁଏ ପଚାରନ୍ତି କିରୂପେ କହ ଏ କଥା ।
ବିଷ୍ଣୁଶର୍ମା କହୁଛନ୍ତି ରାଜ ପୁଏ ଶୁଣ ସ୍ଥିର ମନ କଥା । ୫୮ ।

ଗୋଦାବରୀ ତୀରେ ବିଶାଳ ଶିମିଳୀ ଅଛି ତାହାର ଉପରେ ।
ରାତିରେ ନାନା ଦିଗ ଦେଶରୁ ଆସିଣ ପକ୍ଷି ସମୂହ ବସରେ । ୬୧ ।
କୌଣସି କାଳରେ ରାତି ଅବସାନେ ଚନ୍ଦ୍ର ଅସ୍ତ ଗିର ଯାଇ ।
ହୁଅନ୍ତେ ଲଘୁ ପତନ ନାମେ କାକ ନିଦ୍ରା ତ୍ୟଜିଣ ଉଠଇ । ୬୦ ।
ଉଠି ଚାହିଁଲା ସେ ବ୍ୟାଧକୁ ଦେଖିଣ ମଣିଲା କୃତାନ୍ତପର ।
ପ୍ରାତରେ ଅନିଷ୍ଟ ଦେଖିଲାକ୍ଷୁ ଆଜ କି ହେବ ମନେ ବିଚାର । ୬୧ ।
କି ହେବ କି ହେବ ବୋଲିଣ ମନରେ ବହୁତ ବ୍ୟାକୁଳ ହେଲା ।
ଏମନ୍ତ କହିଣ ବ୍ୟାକୁଳ ହୋଇଣ କ୍ରମରେ ସେ ଚଳି ଗଲା । ୬୨ ।
ଯେଉଁ ହେତୁରୁ ହର୍ଷ ସ୍ଥାନ ସହସ୍ର ଭୟ ସ୍ଥାନ ଶତ ଶତ ।
ମୂର୍ଖ ଯେନଇ ପଣ୍ଡିତ ତାନମାନେ ସବୁ କଥାତ ଅସତ୍ୟ । ୬୩ ।
ତଥାପି ସଂସାରେ ଜନଙ୍କ ଦେହରେ ଇଷ୍ଟାନିଷ୍ଟ ଦରଶନେ ।
ଭଲ ମନ୍ଦ କଥା ବୁଝିଣ ସର୍ବଥା କର ଦେବାନ୍ତ ଦର୍ଶନେ । ୬୪ ।
ବନ୍ଧୁ ବର୍ଗର ବୁଝିଲା ଜେଲକୁ ମହା ଭୟ ଆଜ ହେବ ।
ମରଣ ବ୍ୟାଧି ଶୋକ ମଧ୍ୟେ କି ଅବା ଅନୁଭବ ମୋ ହୋଇବ । ୬୫
ଏଥିଅନ୍ତରେ ସେ ବ୍ୟାଧ ଅଗ୍ରତରେ ତଣ୍ଡୁଳ କଣ ପକାଇ ।
ଜାଲକୁ ପାଦନା ଲୁଟିଣ ରହିଲା ଗହନ ବୃକ୍ଷରେ ଯାଇ । ୬୬ ।
ଏହି ସମୟରେ ଚିତ୍ରଗ୍ରୀବ ନାମ କପୋତ ରାଜ ଆକାଶେ ।
ଯାଉଥିଲା ପକ୍ଷିମାନଙ୍କ ସଙ୍ଗତେ ଆହାର ଖାଇବା ଆଶେ । ୬୭ ।
ଦେଖିଲେ ତଣ୍ଡୁଳ କଣ ଭୂତଳରେ ଲୋଭେ ସମସ୍ତ କପୋତ ।
ତଣ୍ଡୁଳ କଣ ଖାଇବାକୁ ଯାଇଁଲେ ତାଙ୍କୁ କିବାଇ ବହୁତ । ୬୮ ।
କହଇ ନିର୍ଜନ ଦେଶରେ ତଣ୍ଡୁଳ ଅଟଇ ଅସମ୍ଭବ କଥା ।
ସ୍ୱଭେଜ କର ଏଥିରେ ଭଲ ନାହିଁ ବିପତ୍ତି ହେବ ସର୍ବଥା । ୬୯ ।
ଯେରୂପେ କଙ୍କଣ ଲୋଭରେ ପଥିକ ପଙ୍କରେ ନିମଗ୍ନ ହେଲା ।
ବୃଦ୍ଧ ବ୍ୟାଘ୍ର ଯାଇ ତାହାକୁ ଧରିଣ ପ୍ରାଣେ ମାର ପକାଇଲା । ୭୦ ।

ସେରୂପେ ତଣ୍ଡୁଳ କଣ ଭକ୍ଷ୍ୟ ଲୋଭରେ ଅମ୍ଭେମାନେ ସଙ୍କଟ ହେବା ।
କେବେହେଁ ବିଚାର ନୁହଇ ପ୍ରଚାର ଅନଠାକୁ ଚାଲି ଯିବା । ୨୧ ।
ଶୁଣିଣ କପୋତମାନେ କହୁଛନ୍ତି ଏହି କଥା କହ ପୁଣ ।
କପୋତ ରାଜ କହ୍ତାର କହୁଅଛି କପୋତମାନେ ହେ ଶୁଣ । ୨୨ ।

ମୁହିଁ ଏକ କାଳେ ଦକ୍ଷିଣ ଅରଣ୍ୟେ ଚରୁ ଚରୁ ନେଇ ପଥେ ।
ଦେଖିଲି ଏକ ବୃଦ୍ଧ ବ୍ୟାଘ୍ର ପଥିକ ଡାକୁଥାଇ କୁଶ ହସ୍ତେ । ୨୩ ।
ପ୍ରାତଃ ସ୍ନାନ କରି ପୁଷ୍କରଣୀ ତଟେ ଅହେ ହେ ପଥିକମାନେ ।
ସୁବର୍ଣ୍ଣ କଙ୍କଣ ଦାନ ଦେବ ମୁହିଁ ପ୍ରତ୍ୟହ କରି ମନେ । ୨୪ ।

ତାହା ଶୁଣି କେହି ଲୋଭଲୁବ୍ଧ ମନେ ପାନ୍ଥ କଙ୍କଣ ଦେଖିଲା ।
କି ଭାଗ୍ୟ ମୋହର ହେଲା ଆଜ ବୋଲି ମନେ ଅନ୍ୟଥା ଚିନ୍ତିଲା । ୨୫ ।
କଙ୍କଣ ମନେ ପୁଣି ବୋଲୁଅଛି ଏ ଦ୍ରବ୍ୟ ନୋହେ ଉଚିତ ।
ଅନଷ୍ଟକୁ ଇଷ୍ଟ ଲାଭକୁ ଧାଇଁଲେ ମରଣ ହୁଏ ନିଶ୍ଚିତ । ୨୬ ।

ଯେଉଁଠାରେ ବିଷ ଦ୍ରବ୍ୟରେ ସଙ୍ଗତ ଅମୃତ ହେଲେ ସେ ମାରେ ।
ତଥାପି ଦ୍ରବ୍ୟ ଅର୍ଜନେ ସବୁଠାରେ ପଣ୍ଡିତ ସନ୍ଦେହ କରେ । ୨୭ ।
ମନୁଷ୍ୟ ସନ୍ଦେହ ନ କଲେ ମଙ୍ଗଳ କଥା ଆଉ ନ ଦେଖଇ ।
ସନ୍ଦେହକୁ ପୁଣି ଆରୋହି ସେ କଲେ ଯେବେ ଜୀଅନ୍ତି ଦେଖନ୍ତି । ୨୮ ।

ଭଲ ସେ ଦେଖିବା ବିଷୟ ବୁଝିବା ଏମନ୍ତ ପାନ୍ଥ ବିଚାର ।
କାହିଁ ତୋ ସୁବର୍ଣ୍ଣ କଙ୍କଣ ପୃଚ୍ଛନ୍ତେ ବ୍ୟାଘ୍ର ହସ୍ତକୁ ପ୍ରସାରେ । ୨୯ ।
ଦେଖ ଏ ସୁବର୍ଣ୍ଣ କଙ୍କଣ ଦେବ ମୁ ଯାହାର କାହାରି ହସ୍ତେ ।
ସରୋବର ଜଳେ ସ୍ନାନ କରି ବେଗେ ଭୟ ନ କରି ଭୁ ମୋତେ । ୩୦ ।

ପଥିକ କହଇ ତୋଠାରେ କିରୂପେ ବିଶ୍ୱାସ ହେବ ମୋହର ।
ବ୍ୟାଘ୍ର କହୁଅଛି ମୋଠାରେ ବିଶ୍ୱାସ କରିବାକୁ ନାହିଁ ଡର । ୩୧ ।
ଦେଖ ପ୍ରାତଃ ସ୍ନାୟୀ ବୃଦ୍ଧ ଦାତା ମୁହିଁ ଗଳିତ ନଖ ଦଶନ ।
ବହୁତ ଶାସ୍ତ୍ର ମୁ କର୍ଣ୍ଣେ ଶୁଣିଅଛି କହୁଛି ତାହା ତୁ ଶୁଣ । ୩୨ ।

ଯାଗ ବେଦ ପାଠ ଦାନ ଯେ ତପସ୍ୟା ସତ୍ୟ ସନ୍ତୋଷ ଯେ କ୍ଷମା ।
ଅଲୋଭ ଏରୂପେ ଅଷ୍ଟ ବିଧ ହୋଇ ଧର୍ମ୍ମ ହୋଇଅଛି ଜମା । ୮୩ ।
ଏଥିରୁ ପୂର୍ବ୍ବ ଚ୍ୟାରି ଗୋଟି କପଟୀ ଜନମାନେ କରୁଛନ୍ତି ।
ଉତ୍ତର ଚ୍ୟାରି ଗୋଟି ସାଧୁଜନଙ୍କଠାରେ ବା କିଛି ଅଛନ୍ତି । ୮୪ ।
ମୋର ଦେଖ ଏତେ ଲୋଭ ବିରହିଲି ସ୍ୱହସ୍ତ ସ୍ଥିତ କଙ୍କଣ ।
ଯାହାକୁ ତାହାକୁ ଦେବାକୁ ମନରେ ବିଚାରୁଅଛି ବ୍ରାହ୍ମଣ । ୮୫ ।
ତଥାପି ବ୍ୟାଘ୍ର ମନୁଷ୍ୟ ଖାଏ ବୋଲି ଜନବାଦ ଦୁର୍ନିବାର ।
ଯେତେ କହିଲେ ତୁ ବୁଝୁଁ ନାହୁଁ ବୃଥା କହିବାରୁ ବହୁବାର । ୮୬ ।
ଗୋହନ୍ତା ବିପ୍ରଙ୍କୁ ଧର୍ମ୍ମୋପଦେଶରେ ସମସ୍ତ ଲୋକେ ମାନନ୍ତି ।
ଯେରୂପେ ସେରୂପେ ଯୋଉଲକ ଲୋକ ବ୍ୟବହାରେ କ ଗଣନ୍ତି । ୮୭
ଅମ୍ଭେ ଧର୍ମ୍ମଶାସ୍ତ୍ର ବହୁତ ପଢିଛୁଁ ଶୁଣ ତୁମ୍ଭେ ବିପ୍ରବର ।
ଶୁଣିଣ ମନରେ ବିଚାର କରିଣ ପ୍ରତିଗ୍ରହ ବେଗେ କର । ୮୮ ।
ଯେରୂପେ ଅପଣା ପ୍ରାଣ ପ୍ରିୟ ହୋଇ ସେରୂପେ ପ୍ରାଣୀଙ୍କ ପ୍ରାଣ ।
ଆତ୍ମ ଅନୁଭବେ ସର୍ବ ପ୍ରାଣୀଠାରେ ଦୟା କରନ୍ତି ସଜ୍ଜନ । ୮୯ ।
ନାହିଁ କରିବାରେ ଦେବାରେ ସୁଖରେ ଦୁଃଖେ ପ୍ରୀତ ଅପ୍ରୀତରେ ।
ଅପଣ ଯେମନ୍ତ ସମସ୍ତେ ତେମନ୍ତ ଜାଣ ଏ କଥା ସତ୍ୟରେ । ୯୦ ।
ତୁ ବଡ ଦରିଦ୍ର ଅଗ୍ନିରେ ଦଗଧ ହୋଇଛୁ ସେହି ହେତୁରେ ।
ତୋତେ ଦେବି ବୋଲି ଯତ୍ନ କରୁଅଛି ହେମ କଙ୍କଣ କରଯେ । ୯୧
ଦରିଦ୍ରମାନଙ୍କୁ ଦେବ ଧନ ଧନୀମାନଙ୍କୁ କେବେ ନ ଦେବ ।
ବ୍ୟାଧିରେ ପଥ୍ୟ ହୁଅଇ ଅଉଷଧ ନିରୋଗରେ କିସ ହେବ । ୯୨ ।
ମରୁତଥ ସ୍ଥଳେ ବୃଷ୍ଟି ଯେଉଁରୂପେ କ୍ଷୁଧାରେ ଭୋଜ୍ୟ ଯେରୂପେ ।
ସଫଳ ହୁଅଇ ଦରିଦ୍ରରେ ଦାନ କହିଲେ ଶ୍ରୀହରି ନୃପେ । ୯୩ ।
ଯେ ଧନ ଦେବାକୁ ବିଚାର କରିବ ଅନୁପକାରୀଙ୍କ ଦେବ ।
ଦେଶ କାଳ ପାତ୍ର ଖୋଜି କରି ଦେଲେ ସେ ଦାନ ସାତ୍ତ୍ୱିକ ହେବ । ୯୪

ଏହି ପୋଖରୀରେ ସ୍ନାନ କରଣ ଭୁ ସୁନା କଙ୍କଣକୁ ଘେନ ।
ଏହି ସମୟରେ ଶୁଣି ଗଲ୍ପ ବୃପ୍ର କରିବାକୁ ସରେ ସ୍ନାନ । ୯୫ ।
ପ୍ରବେଶ ମାତ୍ରକେ ମହା ପଙ୍କେ ମଗ୍ନ ପଳାଇବାକୁ ଅଶକ୍ତ ।
ମନ୍ଦ ମନ୍ଦ ହୋଇ ତା ପାଖକୁ ଯାଇ ବ୍ୟାଘ୍ର ଧରିଲା ତା ହସ୍ତ । ୯୬ ।

ପାଳ୍ପ ବର୍ତ୍ତିରଲ ଧର୍ମ ଶାସ୍ତ୍ର ବେଦାଧ୍ୟୟନ ପ୍ରମାଣ ନୋହେ ।
ଦୁଷ୍ଟ ଲୋକର ଯେ ସ୍ୱଭାବ ପ୍ରମାଣ ଗୋ ଦୁଗ୍ଧ ମଧୁର ବହେ । ୯୭ ।
ଅନ୍ତ ଚିତ୍ତ ବଶ ନୁହେ ଯାହାର ତା କର୍ମ ଗଜ ସ୍ନାନ ପରି ।
ଜ୍ଞାନବନ୍ତ ଜନ କର୍ମ ନ କଲେ ତା ଜ୍ଞାନ ବନ୍ଧ୍ୟା ପୋଷା ପରି । ୯୮ ।

ଯେଉଁ ହେତୁରୁ ମୁମାରକେ ବିଶ୍ୱାସ କଲି ସେ କଥା କ ଭଲ ।
ଭଲ ହେବ ବୋଲି ବିଶ୍ୱାସ କଲି ଯେ ବେଳକୁ ହୋଇଲା ଶଲ । ୯୯ ।
ଅନ୍ୟ ଗୁଣ ଛାଡ ପ୍ରଥମୁଁ ପରୀକ୍ଷା କରିବ ପ୍ରାଣୀ ସ୍ୱଭାବ ।
ସବୁ ଗୁଣଯାକ ସ୍ୱଭାବ ବାଧରି ତାକୁ କେଅବା ବାଧିବ । ୧୦୦ ।

ଏମନ୍ତ ବର୍ତ୍ତିବୁ ବର୍ତ୍ତିଭୁ ବିପ୍ରକୁ ବ୍ୟାଘ୍ର କରି ଦେଲା ଗ୍ରାସ ।
ଏହି ଲୋଭରୁ ଅବଶ୍ୟ ମରିବାଟି ଛାଡ ତଣ୍ଡୁଳର ଆଶ । ୧୦୧ ।
ଏଠାରେ ସକଳ କଥା ବର୍ତ୍ତିରବା ବର୍ତ୍ତିରେ ସକଳ ସିଦ୍ଧି ।
ବର୍ତ୍ତିର ସକଳ କାର୍ଯ୍ୟ କରେ ଯେହୁ ସେଟି ବୋଲାଇ ସୁବୁଦ୍ଧି । ୧୦୨ ।

ସୁପକ୍ୱ ଅନ୍ନ ସୁବିଚକ୍ଷଣ ପୁତ୍ର ବନୀତା ନାରୀ ନୃପତ :—
ସୁସେବିତ ସୁବର୍ତ୍ତିରେ ଯାହା କରି କାଳେ ନୁହଇ ବିପତ୍ତି । ୧୦୩ ।
ଏହା ଶୁଣି କେହି କପୋତ ସଗର୍ବ ହୋଇ କହିଲା ବଚନ ।
କ କହୁଅଛନ୍ତି ଏହାଙ୍କ କଥାକୁ ପେଟରେ ବାନ୍ଧ ବହନ । ୧୦୪ ।

ବୃଦ୍ଧମାନଙ୍କର ବଚନ ସେନବ ଉପୁନ୍ନ ବିପତ୍ତି କାଳେ ।
ସବୁଠାରେ ତାଙ୍କ ବଚନ କରିବ ନ କରି ଭୋଜନ ବେଳେ । ୧୦୫ ।
ଭୟରେ ସମସ୍ତ ଆକ୍ରାନ୍ତ ହୋଇଛି ଅନ୍ନପାନ ଯେ ଭୂତଳେ ।
କେଉଁଠାରେ ବ୍ୟବହାରକୁ କରିବା କଲ୍ପେ ବଞ୍ଚିବା ଭଲେ । ୧୦୬ ।

ଈର୍ଷାବନ୍ତ ଘୃଣାବନ୍ତ ଅସନ୍ତୁଷ୍ଟ କ୍ରୋଧୀ ଯେ ନିତ୍ୟ ଶଙ୍କିତ ।
ପର ଭାଗ୍ୟକୁ ଯେ ଆଶ୍ରୟ କରଇ ଷଡ ଏ ନିତ୍ୟ ଦୁଃଖିତ । ୧୦୭ ।
ଏମନ୍ତ ଶୁଣିଣ ସମସ୍ତ କପୋତ ପଡ଼ଲେ ସେହି ଭୂତଳେ ।
ଯେଠାରେ ପ୍ରବେଶ ମାତ୍ରକେ ସମସ୍ତେ ନିବଦ୍ଧ ହୋଇଲେ ଜାଲେ । ୧୦୮ ।

ଯେଉଁମାନେ ବଡ଼ ଶ୍ରୁତିଧର ବହୁ ଶାସ୍ତ୍ରମାନଙ୍କୁ ପଢନ୍ତି ।
ସବୁ ସନ୍ଦେହକୁ ଛିଣ୍ଡାଉଥିଲେ ସେ ଲୋଭରେ କ୍ଳେଶ ପାଆନ୍ତି । ୧୦୯ ।
ଏଥି ଅନନ୍ତରେ ସମସ୍ତ କପୋତ ଯାହା ବାକ୍ୟ ଜାଲେ ପଡ଼ି :—
ଥିଲେ ସମସ୍ତେ ସେକାଳେ ରୁଣ୍ଡ ହୋଇ ତାହା ପରେ କଲେ ରତି । ୧୧୦

ଗଣକାର୍ଯ୍ୟେ ଅନେ କେବେହେଁ ନ କହି କାର୍ଯ୍ୟ ହେଲେ ସମଫଳ ।
ଯେବେ କାର୍ଯ୍ୟରେ ବ୍ୟାଘାତ ହୋଇଯାଇ ଅଗ୍ରଣୀ ହୁଏ ବିଫଳ । ୧୧୧ ।
ସମସ୍ତ କପୋତ ଦୁରସ୍ଥାର ଦେଖି ଚିତ୍ରଗ୍ରୀବ କହୁଅଛି ।
ଏହା ପରାଭବ କରିବାର ବ୍ୟର୍ଥ ଏହାର କି ଦୋଷ ଅଛି । ୧୧୨ ।

ବିପତ୍ତି ପଡ଼ିବା କାଳରେ ଯେ ପ୍ରିୟ ସେ ବିପତ୍ତି ହେତୁ ହୋଇ ।
ଦେଖ ଏ ବାଛୁର ବନ୍ଧନ କାଳରେ ମାତୃ ଜଙ୍ଘ ସ୍ତମ୍ଭ ହୋଇ । ୧୧୩ ।
ବିପତ୍ତିଗ୍ରସ୍ତ ଲୋକଙ୍କୁ ବିପତ୍ତିରୁ ଯେହୁ ଉଦ୍ଧାର କରଇ ।
ତାକୁ ଏକା ବନ୍ଧୁ କହି ଗଣ୍ଠି କଥା ନିନ୍ଦୁକ ପଣ୍ଡିତ ନୋହି । ୧୧୪ ।

ଏଠାରେ ଧୈର୍ଯ୍ୟକୁ ଅବଲମ୍ବନ କରି ପ୍ରତିକାର ଚିନ୍ତା କର ।
ବିପତ୍ତି କାଳରେ ଧୈର୍ଯ୍ୟ ହେବାର ହୁଏ ଅତି ଶୋଭାକର । ୧୧୫ ।
ବିପତ୍ତି କାଳରେ ଧୈର୍ଯ୍ୟ ହୋଇବ କ୍ଷମା ଉଦୟ କାଳରେ ।
ସଭାରେ ବଚନ ଚତୁର ବିକ୍ରମ ଶୋଭାକୁ ପାଇ ଯୁଦ୍ଧରେ । ୧୧୬ ।

କୀର୍ତ୍ତିରେ ପ୍ରୀତି ବେଦେ ବ୍ୟବହାର ସ୍ୱଭାବ ସିଦ୍ଧ ଏମାନେ ।
ବଡ଼ ଲୋକମାନଙ୍କର ଏହିରୂପେ କାଳ ଯାଇ ସାବଧାନେ । ୧୧୭ ।
ଯେଉଁ ପୁରୁଷ ଲକ୍ଷ୍ମି ଇଚ୍ଛା କରେ ନିଦ୍ରା ତନ୍ଦ୍ରା ଭୟ କ୍ରୋଧ ।
ଅଲସ୍ୟ ଦୀର୍ଘସୂତ୍ରିତା ଷଟ ଦୋଷ ଏହାକୁ ଛାଡ଼ିଲେ ସିଦ୍ଧ । ୧୧୮ ।

ବର୍ତ୍ତମାନ ଯେଉଁରୂପରେ କହିବ ସେରୂପେ କରିବା ଆସ ।
ସମସ୍ତେ ଏକଚିତ୍ତ ହୋଇ ଜାଲକୁ ଘେନ ଉଡ଼ିବା ଅକାଶ । ୧୧୯ ।
କ୍ଷୁଦ୍ର ଜନ୍ତୁମାନେ ଏକଚିତ୍ତ ହେଲେ ସର୍ବ କାର୍ଯ୍ୟକୁ ସାଧନ୍ତି ।
ତୃଣମାନେ ସବୁ ଦଉଡ଼ି ହୋଇଲେ ମତ୍ତଗଜକୁ ବାନ୍ଧନ୍ତି । ୧୨୦ ।
ନିଜକୁଳେ ଜାତ ଅଳପ ମାନବ ମିଳନେ ଶୋଭାକୁ ପାନ୍ତି ।
ତୁଷହୀନ ହେଲେ ତଣ୍ଡୁଳ କେବେହେଁ ଅଙ୍କୁର ଯୋଗ୍ୟ ନୁହନ୍ତି । ୧୨୧ ।
ଏମନ୍ତ ବଚନ ଶୁଣି ସମସ୍ତେ ଜାଲ ଘେନି ଉଡ଼ିଗଲେ ।
ଦୂରରୁ ଏହାକୁ ଦେଖିଣ ଲୁବ୍ଧକ ପଛରେ ଗୋଡ଼ାଇ ଗଲେ । ୧୨୨ ।
ମନେ ବିଚାରିଲା ଏକଚିତ୍ତ ହୋଇ ମୋ ଜାଲକୁ ଘେନ ଯାନ୍ତି ।
ଯେବେ ଏ ଭୂମିରେ ପଡ଼ିବେ ତେବେ ମୋ ଭକ୍ଷ ହୋଇବେ ଇତ୍ୟନ୍ତି । ୧୨୩ ।
ଏଥୁ ଅନନ୍ତରେ ପକ୍ଷୀମାନେ ନେତ୍ର ପଥରୁ ଅତୀତ ହେଲେ ।
ଦେଖି ନିବର୍ତ୍ତିଲା ବ୍ୟାଧ ତା ଦେଖିଣ କପୋତମାନେ କହିଲେ । ୧୨୪ ।
ବର୍ତ୍ତମାନରେ କି ଉଚିତ କରିବା କହିବା ହେଉ ରାଜନ ।
ଶୁଣି ଚିତ୍ରଗ୍ରୀବ ବିଚାରିଣ କହେ ସେକାଳ ଯୋଗ୍ୟ ବଚନ । ୧୨୫ ।
ମାତା ମିତ୍ର ପିତା ଏତିନ ଜନରେ ସ୍ୱଭାବେ ହିତ ବୋଲନ୍ତି ।
ଉପକାର କରିବାକୁ ଅନ୍ୟମାନେ ହିତକାରକ ହୁଅନ୍ତି । ୧୨୬ ।
କ୍ଷୀଣଫଳ ବୃକ୍ଷ ଛାଡ଼ନ୍ତି ବିହଗ ଶୁଷ୍କ ସରକୁ ସାରସ ।
ବାସି ପୁଷ୍ପକୁ ଛାଡ଼ନ୍ତି ମଧୁକର ଦଗ୍ଧବନକୁ ମୃଗ । ୧୨୭ ।
ନିର୍ଦ୍ଧନ ଲୋକକୁ ଛାଡ଼ଇ ଗଣିକା ମନ୍ତ୍ରୀ ଛାଡ଼େ ଭ୍ରଷ୍ଟ ରାଜ ।
କାର୍ଯ୍ୟବଶରୁ ସର୍ବଜନ ପୀରତି କେ କାହାର କରେ କାର୍ଯ୍ୟ । ୧୨୮ ।
ଏହି ହେତୁରୁ ମୋ ମିତ୍ର ହିରଣ୍ୟକ ମୂଷିକ ଗଣ୍ଡକୀ ତୀରେ ।
ନିବାସ କରଇ ଚିତ୍ରବନେ ଆମ୍ଭ ପାଶ କାଟିବ ସତ୍ୱରେ । ୧୨୯ ।
ଏମନ୍ତ ବିଚାରି ସର୍ବେ ହିରଣ୍ୟକ ବିବରେ ହେଲେ ପ୍ରବେଶ ।
ଅପାୟ ଶଙ୍କାରେ ଶତ ଦ୍ୱାର କରି ମୂଷିକ କରଇ ବାସ । ୧୩୦ ।

କପୋତ ପଡଲ୍ଲ ଶବଦ ଶୁଣିଣ ହିରଣ୍ୟକ ଭୁନ ହେଲା ।
କହେ ହିରଣ୍ୟକ ମେଁ ଭାଳି ଅଛ ଚିତ୍ରଗ୍ରୀବ ଡାକ ଦେଲା । ୧୩୧ ।
ସେବଚନ ଶୁଣି କଣ୍ଠ ସ୍ୱର ଜାଣି ହିରଣ୍ୟକ ବାହାରଲା ।
ମୋର ବଡ ଭାଗ୍ୟ ମେଁ ଚିତ୍ରଗ୍ରୀବ ଦେଖିଲ୍ ବୋଲ୍ ବୋଇଲା । ୧୩୨
ପାଶ ବନ୍ଧ ଦେଖି ଅଶ୍ଚର୍ଯ୍ୟ ହୋଇଣ ବଚ୍ଚରେ ଏ କ ହେ ମିତ ।
ଚିତ୍ରଗ୍ରୀବ ବୋଲେ ଅମ୍ଭମାନଙ୍କର ପୂର୍ବ ପାପ ବଳଯେତ । ୧୩୩ ।
ରୋଗଶୋକ ଦୁଃଖ ବନ୍ଧନ ବପତ୍ତି ଏମାନେ ଶାସ୍ତ୍ର ପ୍ରମାଣ ।
ପ୍ରାଣିମାନଙ୍କର ଅତ୍ମ ପାପବୃକ୍ଷେ ଫଳ ଏମାନେଟି ଜାଣ । ୧୩୪ ।
ଏହା ଶୁଣି ହିରଣ୍ୟକ ଚିତ୍ରଗ୍ରୀବ ପାଶ ଛେଦନେ ଉଦ୍ୟତ ।
ଦେଖି ଚିତ୍ରଗ୍ରୀବ ବୋଲେ ମୋ ସେବକ ପାଶ ଆଗେ ଛେଦ ମିତ ୧୩୫
ଆପଣା କାର୍ଯ୍ୟ ନ କର ପର କାର୍ଯ୍ୟ କଲା ଲୋକ ଭାଗ୍ୟବନ୍ତ ।
ଆପଣା କାର୍ଯ୍ୟକୁ ନ ବାଞ୍ଛି ଯେ ପର କାର୍ଯ୍ୟ କଲା ସେ ମଧ୍ୟସ୍ଥ । ୧୩୬ ।
ଆପଣା କାର୍ଯ୍ୟ ନିମନ୍ତେ ପର କାର୍ଯ୍ୟ ନାଶେ ସେ ନର ଗ୍ରକ୍ଷସ ।
ଆପଣା କାର୍ଯ୍ୟ ନ କର ପର କାର୍ଯ୍ୟ ନାଶେ ମୁ ନ ଜାଣେ କସ । ୧୩୭ ।
ହିରଣ୍ୟକ ବୋଲେ ମେଁ ଅଳ୍ପ ବଳ କୋମଳ ମୋହର ଦନ୍ତ ।
ତେଣୁକରି ଏତେ ପାଶ ଛଣ୍ଡାଇବ ମୁହିଁ କରୂପେ କହତ । ୧୩୮ ।
ଯେବେ ତୁମ୍ଭ ପାଶ ଛିଡଲାଉତ୍ତାରୁ ନ ଭାଙ୍ଗବ ମୋର ଦନ୍ତ ।
ଅନ୍ୟ ପାଶ ଛିଣ୍ଡାଇବ ଏହା ଶୁଣି ଚିତ୍ରଗ୍ରୀବ କହେ ମିତ । ୧୩୯ ।
ଅଥ ହେଉ ତୁମ୍ଭ ବଳକୁ ଗୃହିଁଣ ଏହାଙ୍କ ପାଶକୁ ଛେଦ ।
ହିରଣ୍ୟକ ବୋଲେ ଅପଣାକୁ ଛାଡ ପର ରକ୍ଷାରେ କ ଖେଦ । ୧୪୦ ।
ବିପତ୍ତି ନିମନ୍ତେ ଧନକୁ ରଖିବ ଧନ ଦେଇ ଭାର୍ଯ୍ୟା ରଖି ।
ଦାର ଧନ ଦେଇ ଅତ୍ମକୁ ରଖିବ ସମସ୍ତଙ୍କ ମନେ ଲେଖି । ୧୪୧ ।
ମିଛ ଧନ ଦାର ପୃଥିବୀ ଏମାନେ ପୁଣି ପୁଣି ଯେ ହୁଅନ୍ତି ।
ଗଲା ଶରୀର ପୁଣି ପୁଣି ନୁହଇ ଏମନ୍ତ କହନ୍ତି ସୁତ । ୧୪୨ ।

ପ୍ରାଣମାନେ ଧର୍ମ୍ମ ଅର୍ଥ କାମ ମୋକ୍ଷ ଏ ଚାରିଙ୍କର ହେତୁ ହୋଇ ।
ପ୍ରାଣକୁ ନାଶିଲେ ଲୋକ ସର୍ବ ନାଶେ ରଖିଲେ ସର୍ବ ରଖଇ । ୧୪୩ ।
ଏ ଯେଉଁ ଶରୀର ସର୍ବ ଧର୍ମ୍ମ ହେତୁ ଯତ୍ନେ ଏହା ରକ୍ଷା କର ।
ଶରୀରରୁ ଧର୍ମ୍ମ ଜନମ ହୁଅଇ ଯେସନେ ପର୍ବତୁଁ ସଲିଳ । ୧୪୪ ।
ଶୁଣି ଚିତ୍ରଗ୍ରୀବ କହେ ଅହେ ମିତ୍ର ମିତ୍ର ଏରୂପେ କହୁଛ ।
ମୁହିଁ ପୁଣି ଏ ସେବକମାନଙ୍କର ଦୁଃଖ ଦେଖି ନ ପାରୁଛ । ୧୪୫
ଧନ ଜୀବନ ଏ ଦୁହିଁଙ୍କ ପରାର୍ଥେ ଛାଡ଼ଇ ପଣ୍ଡିତ ମୂଳ ।
ଅବଶ୍ୟ ବିନାଶ ହେବ ଏହେତୁରୁ ପରାର୍ଥେ ବିନାଶ କର । ୧୪୬

ଏହାଙ୍କ ସହିତ ଅଛଇ ମୋହର ଜାତି ଦ୍ରବ୍ୟ ବଳ ସଉ ।
ଏମାନଙ୍କଠାରେ ମୋର ପ୍ରଭୁପଣ କେବେହେଁ ନୋହିବ କଉ । ୧୪୭
ବର୍ତ୍ତନ ନ ଖାଇ ଏମାନେ ନିକଟ ମୋର ନ ଛାଡନ୍ତି ଦେଖ ।
ସେହି ହେତୁରୁ ମୋ ପ୍ରାଣକୁ ନ ଚାହିଁ ସେବକମାନଙ୍କୁ ରଖ । ୧୪୮

ମାଂସ ମୂତ୍ର ବିଷ୍ଠା ଶୁକ୍ର ମଜ୍ଜା ଅସ୍ଥି ନିର୍ମିତ ପ୍ରାଣି ଶରୀର ।
ଏହି ଶରୀରେ କି ଆଦର ମୋହର ମିତ୍ର ଯଶ ରକ୍ଷା କର । ୧୪୯
ସମସ୍ତ ମଳ ସହିତରେ ଅନିତ୍ୟ ଏମନ୍ତ ପ୍ରାଣିର ଦେହ ।
ଯେବେ ନିର୍ମ୍ମଳ ନିତ୍ୟ କୀର୍ତ୍ତି ଅର୍ଜ୍ଜିଲେ କି ଲାଭ ନୋହିଲା କହ । ୧୫୦

ଏ ଶରୀର ଗୁଣମାନଙ୍କ ଅନ୍ତର ବହୁତ ଅଛି ତା ଶୁଣ ।
ଏ ଯେଉଁ ଶରୀର କ୍ଷଣକରେ ଯିବ କଳ୍ପାନ୍ତ ରହଇ ଗୁଣ । ୧୫୧
ଏମନ୍ତ ଶୁଣି ହିରଣ୍ୟକ ହରଷ ପୁଲକିତ ହୋଇ କହି ।
ତୋର ଏ ସେବକ ସ୍ନେହରୁ ତ୍ରିଲୋକ ପ୍ରଭୁତ୍ୱ ତୋତେ ଯୋଗାଇ । ୧୫୨

ଏମନ୍ତ କହିଣ ସମସ୍ତ ପାଶକୁ ଛେଦିଲେ ସେ ହିରଣ୍ୟକ ।
ପୁଣି କହୁଅଛି ମିତ୍ର ବନ୍ଧନରୁ ଆପ୍ତଙ୍କୁ ନ କର ଥକ । ୧୫୩
ଶତ ଯୋଜନରେ ଆମିଷ ଥିଲେହେଁ ଯେଉଁ ପକ୍ଷୀକି ଦିଶଇ ।
ସେ ପୁଣି ଆପଣା ମରଣରକାଳେ ପାଶବନ୍ଧ ନ ଦେଖଇ । ୧୫୪

ସୁଧାଂଶୁ ଦିବାକର ଗ୍ରହ ପୀଡ଼ନ ଗଜ ଭୁଜଙ୍ଗ ବନ୍ଧନ ।
ଦରିଦ୍ର ଦେଖି ବୁଦ୍ଧିମାନ ଜନଙ୍କୁ ଜାଣ ବିଧି ବଳବାନ । ୧୫୫
କେବଳ ଆକାଶେ ଯାନ୍ତି ଯେଉଁ ପକ୍ଷିମାନେ ସେ ବନ୍ଦ ହୁଅନ୍ତି ।
ଅଗାଧ ସମୁଦ୍ର ଜଳେ ଯେଉଁ ଜନ୍ତୁ ତାହାଙ୍କୁ ଜନେ ମାରନ୍ତି । ୧୫୬

ଏ ସ୍ଥାନରେ ଭଲ ସେ ସ୍ଥାନେ ଅସାର ଗୁଣ ଦୋଷ କିଛି ନାହିଁ ।
କାଳ ସେ ବ୍ୟସନ କରକୁ ବଢ଼ାଇ ଦୂରରୁ ସବୁ ନିଅଇ । ୧୫୭
ଯେଉଁ ହିରଣ୍ୟ କଶ୍ୟପୁ ବକ୍ଷସ୍ଥଳେ ଇନ୍ଦ୍ର ଉଦଣ୍ଡ ମୂଷଳ ।
ମହାଦେବଙ୍କର ଫାରଶାର ଦାନ୍ତ ବାଜି ହୋଇଲା ବିଫଳ । ୧୫୮

ସେହି ଦୈତ୍ୟ ବକ୍ଷସ୍ଥଳକୁ ନୃସିଂହ ନଖ କଲା ବିଦାରଣ ।
ଦଇବ ଯେବେ ବାମ ହୁଏ ଜନକୁ ବଜ୍ର ପ୍ରାଏ ହୁଏ ତୃଣ । ୧୫୯
ଏମନ୍ତ ପ୍ରବୋଧି ଦୂତା ଆଲିଙ୍ଗନ କରି ଯିବାକୁ ସମ୍ମତ ।
ଯାଇ ଚିତ୍ରଗ୍ରୀବ ପରିବାର ସେନ ସ୍ୱସ୍ଥାନ ଗଲେ ତରିତ । ୧୬୦

ହିରଣ୍ୟକ ସେହି ସମୟେ ଆପଣା ବିବରେ ପ୍ରବେଶ ହେଲେ ।
କପୋତବର୍ଗଙ୍କ ହିରଣ୍ୟକ ଚରିତ ଏଠାରୁ ସଂପୂର୍ଣ୍ଣ ହେଲା । ୧୬୧
ଦେଖି ଏ ମୂଷିକ ସ୍ଥିର କପୋତଙ୍କୁ ବନ୍ଧନୁ ମୁକତ କଲା ।
ଏଣୁକରି ମିତ୍ର ଧନ ଏ ଦୁହିଁଙ୍କ ଅର୍ଜିବ ନୀତ କହିଲା । ୧୬୨

ଏଥୁ ଅନନ୍ତରେ ଲଘୁପତନକ ବାୟସ ସବୁ ଦେଖିଲା ।
ଅହେ ହିରଣ୍ୟକ ବଡ଼ ଧନ୍ୟ ତୁମ୍ଭେ ଏମନ୍ତ ବୋଲି କହିଲା । ୧୬୩
ମୁହିଁ ତୁମ୍ଭ ସଙ୍ଗେ ସଙ୍ଗ ଇଚ୍ଛା କରୁଅଛି କର ଅନୁଗ୍ରହ ।
ତାହା ଶୁଣି ହିରଣ୍ୟକ ଗର୍ତ୍ତେ ଥାଇ ପଚାରେ ତୁମ୍ଭେ କେ କହ । ୧୬

ସେ କହେ ଲଘୁପତନ ନାମ ମୋର ଜାତିରେ ବାୟସ ମୁହିଁ ।
ହିରଣ୍ୟକ ବୋଲେ ତେଣୁ ତୋ ସଙ୍ଗରେ ମିତ୍ରପଣ ନ ଯୋଗାଇ । ୧୬
ଯେଣୁ ଯାହା ସଙ୍ଗେ ଯାହା ଯୋଗ ଯୋଗ୍ୟ ବୁଧ ତା ସଙ୍ଗେ ଯୋଗଇ ।
ମୋତେ ତୁ ଖାଇବୁ ତୁ ମୋର ଖାଦକ କିରୂପେ ପ୍ରୀତ ହୁଅଇ । ୧୬

ଭକ୍ଷ ଭକ୍ଷକ ଦୁହିଁଙ୍କ ମିତ୍ରପଣ ବିପତ୍ତି କାରଣ ଜାଣ ।
ଶୃଗାଲ ମୃଗକୁ ପାଶେ ପକାଇଲା କାକ କଲା ତା ରକ୍ଷଣ । ୧୬୭
ବାୟସ ପଚାରେ ହିରଣ୍ୟକ ଭାଇ କହ ଏକଥା କିରୂପେ ।
ହିରଣ୍ୟକ ଅଦ୍ୟୋପାନ୍ତ କରି ତାହା କହଇ କଥା ସ୍ୱରୂପେ । ୧୬୮
ମଗଧ ଦେଶରେ ପ୍ରସିଦ୍ଧ ହୋଇଣ ଅଛଇ ଚମ୍ପକ ବନ ।
ତହିଁରେ ବଡ଼ ସ୍ନେହରେ କାକ ମୃଗ ମିତ୍ର କରିଥାନ୍ତି ସ୍ଥାନ । ୧୬୯
ସେ ମୃଗ ପୁଷ୍ଟାଙ୍ଗ ବନରେ ଭ୍ରମନ୍ତେ ଶୃଗାଲ ତାକୁ ଦେଖିଲା ।
କିରୂପେ ଏହାର ସୁଲଳିତ ମାଂସ ଖାଇବି ବିଚାର କଲା । ୧୭୦
ହେଉ ଏହା ସଙ୍ଗେ ବିଶ୍ୱାସ କରିବି ବୋଲି ତା ପାଖକୁ ଗଲା ।
ଅହେ ମିତ୍ର ସବୁ କୁଶଳ ତୁମ୍ଭର ବୋଲନ୍ତେ ମୃଗ ପୁଚ୍ଛିଲା । ୧୭୧
କେ ତୁମ୍ଭେ ବୋଲି ପଚାରନ୍ତେ ଶୃଗାଲ କହେ କ୍ଷୁଦ୍ର ବୁଦ୍ଧି ନାମ ।
ମୁହିଁ ଜମ୍ବୁକ ଏହି ବନେ ରହୁଛି ବନ୍ଧୁହୀନ ମୃତ ସମ । ୧୭୨
ତୁମ୍ଭଙ୍କୁ ପାଇ ବର୍ତ୍ତମାନ ସବନ୍ଧୁ ଅଜ ଜୀବନ ପାଇଲି ।
ବର୍ତ୍ତମାନ ଅନୁସରି ମୁହିଁ ସଦା ମିତ୍ର ତୋହର ହୋଇଲି । ୧୭୩
ମିତ୍ରକୁ ନିର୍ମ୍ମଳ ପଣେ ବଶ କରି ଶତ୍ରୁକୁ ବିଚାର ବଳେ ।
ଲୋଭକ ଧନରେ ପ୍ରଭୁଙ୍କୁ କାର୍ଯ୍ୟରେ ଦ୍ୱିଜକୁ କରି ଆଦରେ । ୧୭୪
ଯୁବତୀଙ୍କି ବଶ କରିବ ପ୍ରେମରେ ବନ୍ଧୁକୁ ସାମ୍ୟ ବୃତ୍ତିରେ ।
ଦୁଷ୍ଟଙ୍କୁ ସ୍ତୁତିରେ ଗୁରୁଙ୍କୁ ନତରେ ମୂର୍ଖକୁ ବଶ କଥାରେ । ୧୭୫
ପଣ୍ଡିତ ଜନଙ୍କୁ ବିଦ୍ୟାବଳେ ବଶ କରି ରସିକ ଜନଙ୍କୁ ।
ରସରେ ଏରୂପେ ସଦବୃତ୍ତେ ବଶ କରିବ ସର୍ବ ଜନଙ୍କୁ । ୧୭୬
ମୈତ୍ରୀ ଲକ୍ଷଣ ଏରୂପେ ଅଛି ବୋଲି କହନ୍ତେ ସୂର୍ଯ୍ୟାସ୍ତ ହେଲେ ।
ଶୃଗାଲ ମୃଗ ଦୁହେଁ ସାଙ୍ଗ ହୋଇଣ ନିବାସ ଭୂମିକି ଗଲେ । ୧୭୭
ସେଠାରେ ଚମ୍ପକ ଶାଖାରେ ସୁବୁଦ୍ଧି ନାମେ କାକ ମୃଗ ମିତ୍ର ।
ଦୁହିଁଙ୍କ ଦେଖିଣ ପଚାରଇ ଏ କେ କହ ଅହେ ମୃଗ ମିତ୍ର । । ୧୭୮

ମୃଗ କହୁଅଛି ଏ ଜମ୍ବୁକ ଆସିଅଛି ମିତ୍ରପଣ କରୁ ।
କାକ କହୁଅଛି ଅଗନ୍ତୁକ ସଙ୍ଗେ କେବେ ବିଶ୍ୱାସ ନ କର । ୧୭୯
ନ ଜାଣି ଯାହାର କୁଳଶୀଳ ତାକୁ କେବେହେଁ ନ ଦେବ ବାସ ।
ମାର୍ଜାର ଦୋଷରେ ଜରଦ୍ଗବ ଗୃଧ୍ର ପ୍ରାଏ ହୁଅଇ ବିନାଶ । ୧୮୦

ମୃଗ ପଚାରୁଛି ମିତ ଏକଥାକୁ ଶୁଣିବା କିରୂପେ କହ ।
କାକ କହୁଅଛି ଶୁଣ ମୃଗ ମିତ୍ର ଏକଥାକୁ ମନେ ବହ । ୧୮୧
ଗଙ୍ଗାତୀରେ ଗୃଧ୍ରକୂଟ ପର୍ବତରେ ବଡ ଜଟି ବୃକ୍ଷ ଥିଲା ।
ତାହା କୋରଡେ ନଖ ଦନ୍ତ ବିହୀନ ଜରଦ୍ଗବ ଗୃଧ୍ର ଥିଲା । ୧୮୨

ସେ ବୃକ୍ଷବାସୀ ପକ୍ଷିମାନେ ଆପଣା ଆହାରରୁ କିଛି କିଛି ।
ତାହାକୁ ଦିଅନ୍ତି ଖାଇ ସେ ଆହାର ତାଙ୍କ ପିଲାଙ୍କୁ ଜଗିଛି । ୧୮୩
ଏଥୁ ଅନନ୍ତରେ କୌଣସି କାଳରେ ଦୀର୍ଘ କର୍ଣ୍ଣ ସେ ମାର୍ଜାର ।
ପକ୍ଷୀ ପିଲାଙ୍କୁ ଖାଇବାକୁ ପ୍ରବେଶ ଆଶାରେ ହୋଇ ଜର୍ଜ୍ଜର । ୧୮୪

ତାହାକୁ ଦେଖିଣ ପକ୍ଷୀ ପିଲାମାନେ ଭୟରେ ଶବଦ କଲେ ।
ତାହା ଶୁଣି ଜରଦ୍ଗବ ଗୃଧ୍ର କିଏ ଆସୁଛି ବୋଲି କହିଲେ । ୧୮୫
ଗୃଧ୍ରକୁ ଦେଖି ଦୀର୍ଘ କର୍ଣ୍ଣ ମାର୍ଜାର ଭୟରେ ମନ ବୋଇଲା ।
ବର୍ତ୍ତମାନ ଅତି ନିକଟ କିରୂପେ ପଲାଇବି ମୁ କହିଲା । ୧୮୬

ଯେ ହେବ ସେ ହେବ ଏହା ସମୀପକୁ ଯିବାର ହେବ ଉଚିତ ।
ଏମନ୍ତ ବିଚାରି ଅଗ୍ରେ ଠିଆ ହୋଇ ତାକୁ କଲା ଦଣ୍ଡବତ । ୧୮୭
ଗୃଧ୍ର କହୁଅଛି କେ ତୁମ୍ଭେ ସେ କହେ ମୁଁ ଦୀର୍ଘ କର୍ଣ୍ଣ ମାର୍ଜାର ।
ଗୃଧ୍ର କହୁଅଛି ଦୂରରୁ ପଳାଅ ମୋ ଚଞ୍ଚୁଘାତେ ନ ମର । ୧୮୮

ମାର୍ଜାର ଶୁଣିଣ କହଇ ବଚନ ବଧଯୋଗ୍ୟ ହେଲେ ମାର ।
ଜାତି ମାତ୍ରେ କେହି ବଧ୍ୟ ପୂଜ୍ୟ ନୋହି ବଧ୍ୟ ପୂଜ୍ୟ ବ୍ୟବହାର । ୧୮୯
ଗୃଧ୍ର କହୁଅଛି କହ ତୁମ୍ଭେ ପୁଣି ମାର୍ଜାର କହୁଛି ଶୁଣ ।
ମୁହିଁ ନିରାମିଷ ଭୋଜୀ ବ୍ରତଧର ଗଙ୍ଗା ଜଳେ କରେ ସ୍ନାନ । ୧୯୦

ତୁମ୍ଭେ ଧର୍ମ୍ମ ଜାଣ ବୋଲି ବଣ୍ଟାସରେ ପକ୍ଷୀ କହନ୍ତି ମୋ ଅଗେ ।
ଶୁଣି ମୁଁ ଧର୍ମ୍ମ ତୁମ୍ଭଠାରୁ ଶୁଣିବି ବୋଲି ଅଇଲି ସତ୍ୱରେ । ୧୧୧
ଏହିରୂପେ ତୁମ୍ଭେ ଧର୍ମଜ୍ଞ ଜାଣିଲି କଲ ଅତିଥି ମାରଣ ।
ଅତିଥିଠାରେ ଗୃହସ୍ଥ ଯାହା କରେ ସେ ଧର୍ମ କହିବା ଶୁଣ । ୧୧୨
ଶତ୍ରୁ ହେଲେ ଗୃହଠାକୁ ଅସିଥିଲେ ପୂଜା କରିବ ଆଦରେ ।
କାଟିବାକୁ ଅସିଥିଲା ଲୋକଠାରେ ବୃକ୍ଷ କି ଛାଇ ନ କରେ । ୧୧୩
ଯେବେ ତାକୁ କିଛି ଦେବାକୁ ନ ଥାଇ ମଧୁର ବଚନ ଭଣ ।
ବସିବାକୁ ଭୂମି ଜଳ ନେଇ ଦେବ ସାଧୁମାନଙ୍କ ଲକ୍ଷଣ । ୧୧୪
ନିର୍ଗୁଣ ଜନ୍ତୁଠାରେ ଦୟା କରନ୍ତି ସାଧୁମାନେ ସର୍ବକାଳେ ।
ଚନ୍ଦ୍ର ଚଣ୍ଡାଳ ଘରେ କି କିରଣକୁ ସଂହରଣ କରେ ଭାଳେ । ୧୧୫
ଅତିଥି ଯାହାର ଘରଠାରୁ କିଛି ଦ୍ରବ୍ୟ ନ ପାଇଣ ଯାଇ ।
ତାହାକୁ ଅପଣା କଲୁଷ ଦେଇ ସେ ତା ପୁଣ୍ୟ ଘେନି ଗମଇ । ୧୧୬
ଗୃଧ୍ର କହୁଅଛି ମାର୍ଜ୍ଜାର ସ୍ୱଭାବ ତାର ମାଂସେ ବଡ ରୁଚି ।
ପକ୍ଷୀ ପିଲାମାନେ ଏଠାରେ ଅଛନ୍ତି ଏଣୁ ଏରୂପେ କହୁଛି । ୧୧୭
ଶୁଣି ମାର୍ଜ୍ଜାର ଭୂମି ଛୁଇଁ ଅପଣା କର୍ଣ୍ଣ ଦୁହିଙ୍କି ଛୁଇଁଲା ।
ମୁହିଁ ଧର୍ମଶାସ୍ତ୍ର ପଢି ବୈରାଗରେ ବ୍ରତ କରୁଛି ବୋଇଲା । ୧୧୮
ପରସ୍ପରେ ଯେ ବିବାଦ କରୁଛନ୍ତି ସେଠାରେ ଶାସ୍ତ୍ର ପ୍ରମାଣ ।
ଅହିଂସା ପରମ ଧର୍ମ ବୋଲି କହି ଅହିଂସା ପରମ ଦାନ । ୧୧୯
ଯେଉଁମାନେ ସର୍ବ ହିଂସା ନ କରନ୍ତି ସମସ୍ତଙ୍କର ସହନ୍ତି ।
ସମସ୍ତଙ୍କ କାର୍ଯ୍ୟେ ସହାୟ ହୁଅନ୍ତି ସେମାନେ ସ୍ୱର୍ଗକୁ ଯାନ୍ତି । ୧୨୦
ମରଣ କାଳରେ ଯେ ଯାଇ ସଙ୍ଗରେ ସେ ଧର୍ମ ଏକା ସୁହୃଦ ।
ଆଉ ସମସ୍ତେ ଶରୀର ସଙ୍ଗେ ନାଶ ହୁଅନ୍ତି ଏକଥା ବେଦ । ୧୨୧
ଯେଉଁଜନ ଯାର ମାଂସ ଖାଉଅଛି ଦେଖ ଏହାଙ୍କ ଅନ୍ତର ।
ଖାଇବା ଲୋକର କ୍ଷଣେ ସୁଖ ହୁଏ ପ୍ରାଣ ବିୟୋଗ ଅନ୍ୟର । ୧୨୨

ମଇବୁ ବୋଲନ୍ତେ ଯେତେ ଦୁଃଖ କାଳ ହୁଏ ଦେଖ ପୁରୁଷର ।
ସେହି ଅନୁମାନେ ପରରକ୍ଷା କରିବାରେ ହୋଇବ ତତ୍ପର । ୧୦୩
ଯେଉଁଜନ ଅଣ୍ଡ ପଶୁ ବଧ କରି ଶବ ଦର୍ଶ ଅଛି ଯାଗ କରଇ ।
ଜନ୍ମକାଳରୁ ଯେ ଖାଇ ନାହିଁ ମାଂସ ପୁତ୍ରଙ୍କର ଫଳ ସରି । ୧୦୪

ଆପଣା ଇଚ୍ଛାରେ ହୋଇଛି ବଣରେ ଯେ ଶାକରେ ଯେ ପୂରିବ ।
ଏତେ କନ୍ୟ ପେଟ ପାଇଁ କେଉଁ ଲୋକ ମହାପାତକ କରିବ । ୧୦୫
ଏରୂପେ ବଶ୍ୱାସ କରାଇ କୋରଡେ ଥାଇ ପକ୍ଷେ ପୁଷ୍ଟ ଖାଇ ।
ଯାହାର ପିଲା ଖାଇଲା ସେ ଜାଣନ୍ତେ ଜାଣି ବଡ଼ପା ପଳାଇ । ୧୦୬

ଜେ ପିଲା ଖାଇଲା ଏମନ୍ତ ବିଚାରି ଖୋଜନ୍ତେ ତରୁ କୋଟରେ ।
ଦେଖି ପିଲାଙ୍କୁ ଖାଇ ଅସ୍ଥି ରଖିଛି ବୋଲି ଗୃଧ୍ରକୁ ମାରିଲେ । ୧୦୭
ଏହିହେତୁରୁ କହିଲି କୁଳଶୀଳ ନାମ ଯାହାର ନ ଜାଣି ।
ତାହାକୁ କେବେହେଁ ସ୍ଥାନକୁ ନ ଦେଇ ଏହା ମୁଁ ଶାସ୍ତ୍ରରୁ ଶୁଣି । ୧୦୮

ଏମନ୍ତ ଶୁଣିଣ ସକୋଧ ହୋଇ ସେ ଜମ୍ବୁକ କହଇ ବାଣୀ ।
ତୁମ୍ଭର ମୃଗର ପ୍ରଥମ ଦର୍ଶନେ କୁଳଶୀଳ କେବେ ଜାଣି । ୧୦୯
ଯେରୂପେ ଏହାଙ୍କଠାରେ ତୁମ୍ଭ ସ୍ନେହ ବେଳାବେଳ ବଢୁଛି ।
ସେରୂପେ ଏହାଙ୍କଠାରେ ମୋର ପ୍ରୀତ ତୁମ୍ଭେ ନ ବଢ଼ିବ କିଛି । ୧୧୦

ଏ ମୋହର ବନ୍ଧୁ ଏ ମୋହର ନୁହେ ନୀଚ ଲୋକର ଏ ରୀତ ।
ବଡ ଲୋକମାନଙ୍କର ସବୁଠାରେ କୁଟୁମ୍ବ ପରାଏ ପ୍ରୀତ । ୧୧୧
ପରଉପକାରୀ ବନ୍ଧୁ ବୋଲି ଜାଣ ବନ୍ଧୁ ଅପକାରୀ ପର ।
ଦେହ ଜନ୍ୟ ରୋଗ ମାରେ ବନ ଅଉଷଧ କରେ ଉପକାର । ୧୧୨

ସାଧ ଚୋରି ଯୋଗୀ ଗୁଣବନ୍ତ ଯେହୁ ଗୁଣହୀନ ଯେଉଁ ନର ।
ଏମାନେ ଯେରୂପେ ଅଗ୍ରକୁ ଜାଣନ୍ତି ସେରୂପେ ଜାଣନ୍ତି ପର । ୧୧୩
ଯେରୂପେ ମୃଗ ତୁମ୍ଭର ଅଟେ ମିତ୍ର ସେରୂପେ ମୋର ଆପଣ ।
ମୃଗ କହେ କହିବାରୁ କିସ କାର୍ଯ୍ୟ ଆମ୍ଭେ ରହି ଏକମନ । ୧୧୪

କାକ ହେଉ ଏହିରୂପରେ ରହିବା ବୋଲି ଅଙ୍ଗୀକାର କଲେ ।
ଅନନ୍ତରଠାରୁ ପ୍ରତିଦିନ ସ୍ୱଇଚ୍ଛା ଯେ ଯାହା ଇଚ୍ଛାରେ ଗଲେ । ୨୧୫
କେଉଁଦିନେ ମୃଗର ଅଗ୍ରରେ ଜମ୍ବୁକ କହନ୍ତି ଗିର ।
ଅହେ ମିତ ଶୁଣ ପୂର୍ଣ୍ଣ ଧାନ ଅଛି ଏହି ଅରଣ୍ୟ ଭିତର । ୨୧୬
ମୁହିଁ ତୁମ୍ଭଙ୍କୁ ଦେଖାଇବି ବୋଲି ସେ ଧାନ୍ୟ କ୍ଷେତ୍ର ଦେଖାଇଲା ।
ଦେଖି ମୃଗ ପ୍ରତିଦିନ ଯାଇ କରି ପାଚିଲା ଧାନ ଖାଇଲା । ୨୧୭
ଏକ ଦିନେ କ୍ଷେତ୍ରପତି ତା ଦେଖିଣ ସେଠାରେ ଫାଶ ଯୋଚିଲା ।
ମୃଗ ଯାଇ ଧାନ ଖାଉ ଖାଉ ଫାଶେ ପଡ଼ିଣ ସେ ବନ୍ଧିଲା । ୨୧୮
କେ ମୋତେ କାଳ ପାଶରୁ ମିତ୍ର ବିନା ରକ୍ଷା କରିବ ଏ ବନେ ।
ଏମନ୍ତ ବନ୍ଧୁ ଜମ୍ବୁକ ପ୍ରବେଶ ହୋଇ ବଢ଼ିଲା ମନେ । ୨୧୯ ।
ମୋ ମନୋରଥ ଏତେବେଳେ ଫଳିଲା ଏହାର ମାଂସ ଖାଇବି ।
ମାଂସ ଖାଇ ମାଂସ ଲାଗିଥିବା ହାଡ ଦାନ୍ତରେ ମୁ ରେକଟିବି । ୨୨୦ ।
ମୃଗ ଦେଖି ତାକୁ ହରଷ ହୋଇଣ ବୋଇଲେ ମିତ ଆସ ଆସ ।
ରକ୍ଷା କର ମୋତେ ସତ୍ୱର ହୋଇଣ ଛେଦ କର କାଳ ପାଶ । ୨୨୧
ଯୋଗ୍ୟ ବିପତ୍ତିରେ ମିତ୍ରଙ୍କୁ ଚିହ୍ନିବ ଶୂରଜନ ଯୁଦ୍ଧକାଳେ ।
ଦାରିଦ୍ରେ ନିର୍ମଳ ଭାର୍ଯ୍ୟା ଧନ କ୍ଷୟେ ବନ୍ଧୁଙ୍କୁ ବ୍ୟସନ କାଳେ । ୨୨୨
ଜମ୍ବୁକ ପାଶାକୁ ଦେଖିଣ ବନ୍ଧରେ ଗଣ୍ଠି ଭିଡ଼ ହୋଇଛି ।
ମିତ୍ର ଚର୍ମ୍ମ ପଣ ଏ ରବିବାରରେ କେମନ୍ତେ ଦନ୍ତେ କାଟୁଛି । ୨୨୩
ଯେବେ ଅନ୍ୟଥା ନ କରିବ ମନରେ ତାହା କହିବ ପ୍ରଭାତେ ।
ଏଥୁଅନନ୍ତରେ ଘୃଣ୍ଣ ବାସ୍ତୁ ବଡ ଚିନ୍ତା କଲା ଚିତ୍ତେ । ୨୨୪
ଅଜ ରାତ୍ରେରେ କର୍ପୀ ମୃଗ ନଇଲା ବସନ୍ତ କଣ୍ଠା ନ ଗଲା ।
ତହିଁଉତ୍ତାରୁ ଖୋଜୁ ଖୋଜୁ ତାହାକୁ ପାଶ ବନ୍ଧନେ ଦେଖିଲା । ୨୨୫
ଦେଖିକରି ବୋଲେ କଅବସ୍ଥା ମିତ ପାଇଲ ଅଭାଗ୍ୟ ମୋର ।
ମୃଗ କହୁଅଛି ତୁମ୍ଭ ବାକ୍ୟ ନାହିଁ କରିବାର ଏବେ ଫଳ । ୨୨୬

ହିତକାରୀ ମିତ୍ରଜନଙ୍କର ବାକ୍ୟ ଯେଉଁ ଜନ ନ କରଇ ।
ବିପତ୍ତି ତାହାର ନିକଟ ହୁଅଇ ଶତ୍ରୁ ଆନନ୍ଦ କରଇ । ୧୧୭
କାକ ପଚାରନ୍ତି ଜମ୍ବୁକ କାହିଁଛି ମୃଗ ବୋଲେ ଦେଖ ଅଛି ।
ମୋ ମାଂସ ଖାଇବା ନିମନ୍ତେ ସେ ଫେରୁ ବ୍ୟାଧରୂପ ହୋଇଅଛି । ୧୧୮

ସଂସାରେ ମୃଗ ମତ୍ସ୍ୟ ସାଧୁମାନଙ୍କ ବୃତ୍ତି ତୃଣ ହର୍ଷ ଜଳ ।
ହେତୁ ନ ଥାଇଣ ବାଧନ୍ତି ଏହାଙ୍କୁ ଲୁବ୍ଧକ ଖଳ ଧୀବର । ୧୧୯
ଅପରାଧ ମୋର କିଛି ନାହିଁ ବୋଲି ନୋହେ ବିଶ୍ୱାସ କାରଣ ।
ଖଳଲୋକେ ଗୁଣବନ୍ତଙ୍କୁ ବାଧନ୍ତି ବିନାଦୋଷେ ଅକାରଣ । ୧୨୦

ଆମ୍ଭେତ ପୂର୍ବରୁ କହିଥିଲୁଁ ତୁମ୍ଭେ ସେ କଥା ମନେ ନ କଲ ।
ଖଳଲୋକ ସଙ୍ଗେ ପ୍ରୀତି କରିବାରୁ ଏବେ ହେଲ ବିକଳ । ୧୨୧
ପୁଣି ଦୁଃଖେ କାକ ନିଃଶ୍ୱାସ ପକାଇ ବୋଲଇ ଆରେ ଜମ୍ବୁକ ।
ତୁହି ପାପ କର୍ମ୍ମା କଲୁରେ କି ପାପ ତୁହି ଯଥାର୍ଥ ଲୁବ୍ଧକ । ୧୨୨

ଯେ ଉପକାରୀ ବିଶ୍ୱସ୍ତ ଶୁଦ୍ଧଚିତ୍ତ ତାଠାରେ ପାପାଚରଣ ।
କଲା ଯେ ଅସତ୍ୟବନ୍ତଙ୍କୁ ପୃଥିବୀ ବହିଅଛି ଅକାରଣ । ୧୨୩
ପ୍ରଥମେ ପାଦେ ପଡଇ ପୃଷ୍ଠ ମାଂସ ଖାଇ କର୍ଣ୍ଣେ କରେ ରଣ ।
ଛିଦ୍ର ଦେଖିଣ ନିର୍ଭୟେ ବିଶେ ଦୁଷ୍ଟ ମଶକପରାଏ ଜାଣ । ୧୨୪

ଦୁର୍ଜ୍ଜନ ମଧୁର ବଚନ କହିଲେ ବିଶ୍ୱାସ କାରଣ ନୋହି ।
ତୁଣ୍ଡରେ କେବଳ ମଧୁର କହଇ ହୃଦେ ହଳାହଳ ଥାଇ । ୧୨୫
ନୌକା ଖଳ ଜିହ୍ୱା ଏ ଦୁହେଁ ସମାନ ପ୍ରତିକୂଳ ହୁଏ ଗତି ।
ପର ପ୍ରତାରଣ ନିମନ୍ତେ ବିଧାତା କରିଛି ଦାରୁଣାକୃତି । ୧୨୬

ଏଥୁଁ ଅନନ୍ତରେ ପ୍ରଭାତ କାଳରେ ବାଡ ଘେନ କ୍ଷେତ୍ରପତି ।
ମୃଗ କାକ ଥିଲେ ପ୍ରଦେଶରେ ଆସି ପ୍ରବେଶ ହେଲେ ତତ୍ପର । ୧୨୭
ତାହାଙ୍କୁ ଦେଖିଣ କାକ କହୁଅଛି ମିତ ମଲା ପରାଏ ରହ ।
ଯେବେ ମୁଁ ଶବଦ କରିବ ତା ଶୁଣି ଯିବ ସତ୍ୱର ପଳାଇ । ୧୨୮

ଥିଁ ଅନ୍ତେ କ୍ଷେତ୍ରପତି ମୃଗ ଦେଖି ମଲା ଏ ବୋଲି ଜାଣିଲା ।
ଜାଳ ଫିଟାଇ ପାଶ ଚୁଡ଼ଅନ୍ତୁ ରଖିବାକୁ ଯତ୍ନ କଲା । ୧୩୯
ଥିଁ ଅନ୍ତେ କାକ ଶବଦ କଲା ତା ଶୁଣି ମୃଗ ପଳାଇଲା ।
ାକୁ ଚାହିଁ ବାଡ଼ି ଫୋପଡ଼ାଇଲା ସେ ତା ବାଜ ଶୃଗାଳ ମଲା । ୧୪୦
ନ ବରଷରେ ତିନ ମାସେ ତିନ ପକ୍ଷରେ ତିନ ଦିନରେ ।
ଧିକ ଶସ୍ତ୍ର ପାପ ପୁଣ୍ୟ ଫଳ ଏହି ଜନ୍ମରେ ପାଅନ୍ତି ନରେ । ୧୪୧
ହି ହେତୁରୁ ଯେ ମୁଁ କହିଲି ଭକ୍ଷ୍ୟ ଭକ୍ଷକର ପ୍ରୀତି ନୋହି ।
ହିରଣ୍ୟକ ଏହା କହିଲା ଶୁଣିଣ ଲଘୁପତନ କହଇ । ୧୪୨
ତୁମ୍ଭେ ଖାଇଲେ ମୁଁ ଖାଇବି ଅହାର ନ ଖାଇଲେ ନ ଖାଇବି ।
ତୁମ୍ଭେ ବଞ୍ଚିଥିଲେ ମୋ ଜୀବନ ଅଛି ଚିତ୍ରଗ୍ରୀବ ପ୍ରାଏ ହେବି । ୧୪୩
ାଧୁଙ୍କର ସାଧୁ ସ୍ୱଭାବ ହେତୁରୁ ତୋର କପୋତର ପରି ।
ଗୁଣ୍ୟବନ୍ତ ତିର୍ଯ୍ୟକ୍ ଜନ୍ତୁ ହେଲେ ମଧ୍ୟ ତାଙ୍କ ବିଶ୍ୱାସ ଜାଣିଲି । ୧୪୪
ାଧୁ ପ୍ରକୋପିତ ହେଲେ ତାର ମନ ନ ଭଜେ ବିକାର ଭାବ ।
ତୃଣାଗ୍ନି ଶିଖାରେ ସମୁଦ୍ର ଜଳ କି ତାପିବାକୁ ଶକ୍ତ ହେବ । ୧୪୫
ହିରଣ୍ୟକ କହେ ସ୍ୱଭାବ ଚଞ୍ଚଳ ତୁ ଅଟୁ ତୋରେ କି ପ୍ରୀତି ।
ଚଞ୍ଚଳ ସଙ୍ଗରେ ପ୍ରୀତି କରିବାର ସର୍ବଥା ନୁହଇ ନୀତି । ୧୪୬
ାର୍ଜ୍ଜାର ମହିଷ ମେଷ କାକ ନନ୍ଦ୍ୟ କାପୁରୁଷ ପୁଣି ନାରୀ ।
ବିଶ୍ୱାସ ଏତେଠାରେ କେବେ ନ କର ବିଶ୍ୱାସ କଲେତ ମରି । ୧୪୭
ୀତି ଯୋଗ୍ୟ ହୋଇଥିଲେ ଶତ୍ରୁ ସଙ୍ଗେ ପୀରତି କରିବ ନାହିଁ ।
ଯେଣୁ ଅତି ତପ୍ତ ଜଳଧାରକକୁ ପଡ଼ିଲା ମାତ୍ରେ ଲିଭାଇ । ୧୪୮
ଯ ନୋହିବାର ସେ କେବେହେଁ ନୁହଇ ହେବା କାର୍ଯ୍ୟ ନିଶ୍ଚେ ହୋଇ ।
କେବେହେଁ ଶକଟ ଜଳରେ ନ ଯାଇ ନୌକା ସ୍ଥଳେ ନ ଚଳଇ । ୧୪୯
ଡ ଲୋକଙ୍କ ଚେଷ୍ଟାକୁ ଚାହିଁ ଯାର ଶତ୍ରୁରେ ବିଶ୍ୱାସ ହୋଇ ।
ରକତ ସ୍ତ୍ରୀଯ୍ୟାଠାରେ ଯାର ଅଛି ତାହାର ଜୀବନ ଯାଇ । ୧୫୦

କାକ କହୁଅଛ ଶୁଣିଲି ମୁ ସବୁ ତଥାପି ମୋହର ମନ ।
ତୋର ସଙ୍ଗେ ଯେବେ ପୀରତ ନୋହିବ ତୋ ଗର୍ତ୍ତଦ୍ୱାରେ ମରଣ । ୧୫୧
ଦୁର୍ଜନର ପ୍ରୀତ ମାଟି ଘଟ ପ୍ରାଏ ଭଜଲେ ଯୋଡ ନୁହଇ ।
ସୁଜନ ପ୍ରୀତ କନକ ଘଟ ପ୍ରାୟେ ନ ଭାଙ୍ଗି ସବୈସ୍ୱ ହୋଇ । ୧୫୨

ଖଳ ସଜ୍ଜନ ଦୁହିଁଙ୍କର ପୀରତ ପ୍ରାତ ମଧ୍ୟ ଛଇ ପ୍ରାୟେ ।
ପୂର୍ବ ଅତ୍ର ବଢି କ୍ରମରେ ଛୁଟଇ ମଧ୍ୟେ ହୀନ ପ୍ରାନ୍ତ ହୁଏ । ୧୫୩
ଦ୍ରବ ହେଲେ ସର୍ବ ଲୌହ ହୁଏ ମଙ୍ଗ ମୃଗ ପକ୍ଷେ ନମିତ୍ତରେ ।
ଭୟରେ ଲୋଭରେ ମୂର୍ଖର ସଙ୍ଗମ ସାଧୁଙ୍କ ଦରଶନରେ । ୧୫୪

ସାଧୁମାନଙ୍କର ସ୍ନେହ ଛେଦ ହେଲେ ଗୁଣ ବିକୃତ ନୁହନ୍ତି ।
ପଙ୍କଜ ମୃଣାଳ ଭାଙ୍ଗିଗଲେ ତାର ତନ୍ତୁମାନ ନ ଭାଙ୍ଗନ୍ତି । ୧୫୮
ଚିତ୍ତ ଶୁଦ୍ଧି ଦାନ ଧଇର୍ଯ୍ୟ ସମାନ ସୁଖ ଦୁଃଖେ ରହିବାର ।
ଅକପଟ ଅନୁରାଗ ସତ୍ୟ ବାକ୍ୟ ଏତେ ଗୁଣ ସୁହୃଦର । ୧୫୯

ଏତେ ଗୁଣମାନେ ଅଛନ୍ତି ଏଠାରେ ଏହା ପ୍ରାୟେ ଗୁଣୀ ନାହିଁ ।
ଏମନ୍ତ ବଚ୍ରର ଗାତରୁ ବାହାର ମୂଷିକ କାକଙ୍କୁ କହି । ୧୬୦
ଯେତେ ଯୁକ୍ତି ଥାଇ ସାଧୁଙ୍କ ମଧୁର ବାକ୍ୟ ସୁଖକର ହୁଏ ।
ତେତେ ଗ୍ରୀଷ୍ମକାଳେ ଚନ୍ଦନ ଲେପନ ସ୍ନାନ ମୁକ୍ତାବଳୀ ନୋହେ । ୧୬୧

ବିଶ୍ୱାସ ଭେଦ ମାଗିବାର ନିଷ୍ଠୁରପଣ ନଷ୍ଟ ଚେଷ୍ଟାପଣ ।
କ୍ରୋଧ ସତ୍ୟ ଛାଡିବାର ଯୁଆ କ୍ରୀଡା ଏତେ ମିତ୍ରର ଦୂଷଣ । ୧୬୨
ଏତେ ଦୋଷରୁ ଗୋଟିଏ ଦୋଷ ତୋହଠାରେ ମୁହିଁ ନ ଦେଖିଲି ।
ତୋହର ମଧୁର ବଚନ ମୁ ଶୁଣି ଅମୃତ ପ୍ରାୟ ମଣିଲି । ୧୬୩

ପାଇବାପଣ ସତ୍ୟ ବାକ୍ୟ ଦୁହିଁଙ୍କ ଜାଣିବ କଥା ଯୋଗରେ ।
କପଟ ନ କରିବାର ସ୍ଥିରପଣ ଦୁହିଁଙ୍କ ଜାଣି ନେତ୍ରରେ । ୧୬୪
ଯେଉଁଜନ ଶୁଦ୍ଧ ଚିତ୍ତ ହୋଏ ତାର ମିତ୍ରପଣ ଲୋକେ ନାହିଁ ।
ଧୂର୍ତ୍ତପଣରେ ଖ୍ୟାତ ହୋଇ ଯେ ଜନ ସେ କେବଳ ମିଥ୍ୟା କହି । ୧୬୫

ହିରଣ୍ୟକ କାକ ଯହିଁ ଖଣ୍ଡେ ଯାହା ସର୍ବ ସନମତ କଲେ ।
ଭୋଜନ କରି ମିତ୍ରପଣ କରିଣ ସେ ଦୁହେଁ ସ୍ୱସ୍ଥାନ ଗଲେ । ୧୬୬
ଏରୂପେ କାକ ମୂଷିକ ମିତ୍ର ହୋଇ ଦିନକୁଦିନ ଅହାର ।
ସେ ତାକୁ ଦିଅଇ ଏ ତାକୁ ଦିଅଇ ଏହିରୂପେ ଗଲା କାଳ । ୧୬୭
ଏକ ଦିନ କାକ ମୂଷିକକୁ କହେ ଏଠାରେ ଦୁଷ୍ଟ ଅହାର ।
ସେହି ହେତୁରୁ ଏ ସ୍ଥାନକୁ ଛାଡିଣ ଚ୍ଛଲ ଯିବା ଦେଶାନ୍ତର । ୧୬୮
ହିରଣ୍ୟକ କହେ କେଉଁଠାକୁ ଯିବା ଯେବେ ଯିବା ଅନ୍ୟ ଦେଶ ।
ଯେବେ ଯିବ ଅଦ୍ୟୁ ସ୍ଥାନକୁ ଖୋଜିଣ ପୂର୍ବ ସ୍ଥାନ ଛାଡ ଖସ । ୧୬୯
ସୁବୁଦ୍ଧି ଜନ ଏକ ପାଦ ଭୂମିରେ ରଖି ଚ୍ଛଲେ ଆନପାଦ ।
ଅନ୍ୟ ସ୍ଥାନକୁ ନ ଦେଖି ପୂର୍ବ ସ୍ଥାନ ନ ଛାଡ ଏକଥା ବେଦ । ୧୭୦
କାକ କହୁଅଛି ଶୁଣ ହିରଣ୍ୟକ ଅଛି ଏକ ନ୍ରିବ ସ୍ଥାନ ।
ହିରଣ୍ୟକ କହେ କହ ସେ ସ୍ଥାନକୁ ବାୟସ କହଇ ଶୁଣ । ୧୭୧
ଦଣ୍ଡକ ଅରଣ୍ୟେ କର୍ପୂର ଗଉର ନାମେ ଅଛି ଏକ ସର ।
ତହିଁରେ ପ୍ରିୟ ସୁହୃଦ ଧର୍ମବନ୍ତ ମୋ ମିତ୍ର ଅଛି ମନ୍ଥର । ୧୭୨
ସର୍ବ ଜନଙ୍କର ପର ଉପଦେଶେ ପଣ୍ଡିତପଣ ହୁଅଇ ।
ଆପଣା ଧର୍ମ ଆଚରଣ ବେଳକୁ ଅବା କାହାରି ହୁଅଇ । ୧୭୩
ସେ କୂର୍ମ ମିତ୍ର ମତ୍ସ୍ୟାହାର ଦେଇଣ ଜୀଅଇବ ମିଥ୍ୟା ନୋହି ।
ହିରଣ୍ୟକ ବୋଲେ ତୁମ୍ଭେ ଯେବେ ଯିବ ଏକା ମୁଁ ରହିବ କେହି । ୧୭୪
ଯେଉଁ ଦେଶରେ ଅଦର ମିତ୍ର ବନ୍ଧୁ ବିଦ୍ୟା ଅଗମ ନ ଥିବ ।
ପଣ୍ଡିତ ଲୋକ ଯେ ହୋଇଥିବ ସେହି ଦେଶକୁ ବେଗେ ଛାଡିବ । ୧୭୫
ଧନୀ ବେଦବାଦୀ ରାଜା ନଦୀ ବୈଦ୍ୟ ପଞ୍ଚେ ନ ଥିବେ ଯେ ସ୍ଥାନେ ।
ସେ ସ୍ଥାନରେ ଅଉ ବାସ ନ କରିବ ବୋଲିଛନ୍ତି ଋଷିମାନେ । ୧୭୬
ଏହିହେତୁରୁ ଏ ସ୍ଥାନକୁ ଛାଡିଣ ଯିବା ଚ୍ଛଲ ଆନ ଦେଶ ।
ଏମନ୍ତ ବୋଲି କଥାବାର୍ତ୍ତା ହୋଇ ସେ ସର ନିକଟେ ପ୍ରବେଶ । ୧୭୭

ତହୁଁ ଉତ୍ତାରୁ ଏ ଦୁହିଙ୍କ ଦୂରରୁ ଦେଖି ସେ କୂର୍ମ ମନ୍ଥର ।
ଉଠିକରି ବେଗେ କାକ ମୂଷିକଙ୍କୁ କଲା ଅତିଥି ସତ୍କାର । ୧୭୮
ବାଳ ହେଉ ଅବା ବୃଦ୍ଧ ଯୁବା ହେଉ ଘରକୁ ଯେବେ ଆସିବ ।
ସର୍ବଜନଙ୍କର ଗୁରୁ ଅଭ୍ୟାଗତ ତାହାଙ୍କୁ ପୂଜା କରିବ । ୧୭୯
ବ୍ରାହ୍ମଣମାନଙ୍କର ଗୁରୁ ଦହନ ଦ୍ୱିଜ ବର୍ଣ୍ଣମାନଙ୍କର ।
ସମସ୍ତ ଜନଙ୍କ ଅଭ୍ୟାଗତ ଗୁରୁ ଏକାପତି ନାରୀଙ୍କର । ୧୮୦
କାକ କହେ ସଖେ ମନ୍ଥର ଶୁଣ ହେ ଏ ଯେ ହିରଣ୍ୟ ମୂଷିକ ।
ପୁଣ୍ୟବନ୍ତ ଲୋକମାନଙ୍କରେ ଶ୍ରେଷ୍ଠ ମହା ଦୟାବନ୍ତ ଏକ । ୧୮୧
ଏହାଙ୍କର ଗୁଣ ଅଛି ଯେତେ ତାହା କହିବାକୁ କେ ସମର୍ଥ ।
ସର୍ପେନ୍ଦ୍ରର ହେଲେ ସହସ୍ର ମୁଖରେ କହିବାକୁ ଅସମର୍ଥ । ୧୮୨
ଏମନ୍ତ କହି ବାୟସ ଚିତ୍ରଗ୍ରୀବ ଚରିତ ସବୁ କହିଲା ।
ମନ୍ଥର ଶୁଣି ଆଦର କରି ପୁଣି ହିରଣ୍ୟକକୁ ପୂଜିଲା । ୧୮୩
ପୂଜା ସାରି କୂର୍ମ ହିରଣ୍ୟକୁ ପୁଚ୍ଛେ ଗ୍ରାମ ଛାଡି କିପାଁ ବଣ ।
ଆଶ୍ରୟ କଲ ଏଥିର ହେତୁ କହ କହଇ ମୂଷିକ ଶୁଣ । ୧୮୪
ଚମ୍ପକ ନାମରେ ଗୋଟିଏ ନଗ୍ରେ ତହିଁରେ ସନ୍ୟାସୀ ମଠ ।
ଚୂଡ଼ା କର୍ଣ୍ଣ ନାମେ ତହିଁରେ ସନ୍ୟାସୀ ଶିଷ୍ୟଙ୍କୁ ପଢାନ୍ତି ପାଠ । ୧୮୫
ସେ ପୁଣି ମାଗିଣ ଅନ୍ନ ଆଣି ଖାଇ ନାଗଦନ୍ତେ ଭିକ୍ଷାପାତ୍ର ।
ଅନ୍ନ ଭରି କରି ଥୋଇ ଶୁଅଇ ମୁଁ ତେଣୁ ଖାଇ ତା'ର ଭାତ । ୧୮
ସେଠାକୁ ତାହାର ମିତ୍ର ବୀଣାକର୍ଣ୍ଣ ନାମେ ସନ୍ୟାସୀ ଆଇଲା ।
ତାର ସଙ୍ଗେ କଥା ପ୍ରସଙ୍ଗ କରନ୍ତେ ବଣ ଦଣ୍ଡ ହଲାଇଲା । ୧୮୭
ଏହା ଦେଖି ବୀଣାକର୍ଣ୍ଣ ପୁଚ୍ଛେ ମିତ ବିରକ୍ତ ତୁ ଅନ୍ୟାଶକ୍ତ ।
କେଉଁ ହେତୁରୁ ଏ ଶୁଣି ଚୂଡ଼ା କର୍ଣ୍ଣ କହେ ଶୁଣ ଆହେ ମିତ । ୧୮
ମୁହିଁ ନୁହଇ ବିରକ୍ତ ଦେଖ ଏ ମୂଷା କରୁଛି ବଡ଼ାଇ ।
ଅକାର୍ଯ୍ୟକାରୀ ଏ ମୋର ଭିକ୍ଷାପାତ୍ର ଅନ୍ନକୁ ସର୍ବଦା ଖାଇ । ୧୮୯

ଶୁଣି ବୀଣାକର୍ଣ୍ଣ ନାଗଦନ୍ତ ଶୁହି କହେ ମୂଷା ଅଳ୍ପ ଜନ୍ତୁ ।
କେମନ୍ତେ ଏତେ ଦୂରକୁ ଡେଇଁ ଯାଇଅଛୁ ଏଥିରେ ସେହେତୁ । ୨୯୦
କେଉଁଣସି କାଳେ ଯୁବତି ବୃଦ୍ଧଙ୍କ କେଶ ଧରି ଅଲିଙ୍ଗନ ।
କରଣ ଚୁମ୍ବନ ଦେଖିତ ନ ଥାଇ ଅଛୁ ତହିଁର କାରଣ । ୨୯୧
ବୃଦ୍ଧ ଯୁବତିଙ୍କି ପତଷା ପୋଇଲା ଦେଖି ଏମନ୍ତ ବୋଇଲା ।
ଚୂଡ଼ାକର୍ଣ୍ଣ ପୁଚ୍ଛେ କରୂପେ ଏ କଥା ବୀଣାକର୍ଣ୍ଣ ତା ବୋଇଲା । ୨୯୨
ଗଉଡ ଦେଶରେ କୌଶାମ୍ବୀ ନାମରେ ଗୋଟିଏ ନଗରୀ ଥିଲା ।
ତହିଁ ଚନ୍ଦନ ଦାସ ନାମେ ବଣିକ ମହାଧନୀ ବାସ କଲା । ୨୯୩
ସେ ଚନ୍ଦନ ଦାସ ବୃଦ୍ଧ ବୟସରେ କାମାତୁର ହୋଇ ଅତି ।
ବହୁ ଧନ ଦେଇ ବିବାହ ହୋଇଲା ନାମେ କନ୍ୟା ଲୀଳାବତୀ । ୨୯୪
ସେ ପୁଣି ମକରଧ୍ୱଜ ବୈଜୟନ୍ତୀ ପରାଏ ଯୌବନବତି ।
ସେହି ବୃଦ୍ଧ ପତିଠାରେ ଯେ ତାହାର କେବେହେଁ ନୋହିଲା ମତି । ୨୯୫
ଯେରୂପେ ଶୀତାର୍ତ୍ତ ଚନ୍ଦ୍ରଠାରେ ମନ ଗ୍ରୀଷ୍ମାର୍ତ୍ତ ରବିଙ୍କଠାରେ ।
ନ ରମଇ ସେହିରୂପରେ ନାରୀଙ୍କ ମନ ବୃଦ୍ଧ ପତିଠାରେ । ୨୯୬
କିନ୍ତୁ ତ ନାରୀଠାରେ ବୃଦ୍ଧପତି କରେ ବଡ଼ ଅନୁରାଗ ।
ତାହା କହିବା ରୁ ଶୁଣ ଚୂଡ଼ାକର୍ଣ୍ଣ ଶୁଣି ଯେ ହେବୁ ବିରାଗ । ୨୯୭
ଧନ ଜୀବନରେ ଇଚ୍ଛା ପ୍ରାଣିଙ୍କର ହୁଅଇ ସର୍ବଦା ବଡ ।
ତରୁଣ ଭାର୍ଯ୍ୟାଠାରେ ବୃଦ୍ଧ ପତିର ଧନ ଜୀବନରୁ ବଡ । ୨୯୮
ବୃଦ୍ଧ ବିଷୟକୁ ଭୋଗ କରି ନ ପାରଇ ତାକୁ ନ ଛାଡଇ ।
ଯେପରି ଶ୍ୱାନ ହାଡ ଖାଇ ନ ପାରି କଉରେ ତାକୁ ଜାକଇ । ୨୯୯
ଇଚ୍ଛା ବ୍ୟବହାରି ପିତୃ ମନ୍ଦିରରେ ନିବାସ ଯାତ୍ରା ଉତ୍ସବ ।
ପୁରୁଷ ପାଖରେ ନିବାସ ବିଦେଶେ ଅନୟମ ବା ସ୍ୱଭାବ । ୩୦୦
ଅଶାନ୍ତ ସଙ୍ଗମ ପ୍ରତିଦିନ ନିଜ ନାରୀବୃତ୍ତିରୁ ବଚ୍ୟୁତ ।
ପତି ବୃଦ୍ଧଭାବ ପତିର ବିଦେଶ ଗମନ ନାରୀ ଅସ୍ଥିତ । ୩୦୧

ମଦ୍ୟପାନ ଦୁଷ୍ଟସଂସର୍ଗ ପତିର ବିରହମାର୍ଗ ଗମନ ।
ଅନ୍ୟ ଗୃହେ ସ୍ୱପ୍ନ ଅନ୍ୟ ଗୃହେ ବାସ ଏ ଷଟ ନାରୀ ଦୂଷଣ । ୩୦୨
ସ୍ଥାନ ନ ଥିବାର କ୍ଷଣ ନ ଥିବାର ନାହିଁ ପ୍ରାର୍ଥନାକୁ ନର ।
ତେବେହେଁ ସମ୍ଭବ ଏ ନାରୀମାନଙ୍କ ସତୀତ୍ୱ ହୁଏ ପ୍ରସର । ୩୦୩
ନାରୀମାନଙ୍କର କେ ଅପ୍ରିୟ ଅଛି ପ୍ରିୟ କେହି ନାହିଁ ଜାଣ ।
ନୂଆନୂଆକୁ ସେ ଇଚ୍ଛାକରୁଥାନ୍ତି ମୃଗ ବନେ ଯେସନେ ତୃଣ । ୩୦୪
ତପତ ଅଙ୍ଗାରସମାନ ପୁରୁଷ ଘୃତ କୁମ୍ଭ ସମ ନାରୀ ।
ସେହି ହେତୁରୁ ଘୃତ ବହ୍ନି ଦୁହିଙ୍କି ବୁଧ ଏକଠା ନ କରି । ୩୦୫
ପିତା ବାଲ୍ୟକାଳେ ରକ୍ଷଣ କରଇ ଯୌବନେ ଧବ ରଖଇ ।
ବୃଦ୍ଧକାଳେ ପୁତ୍ର ରକ୍ଷା ସେ କରଇ ଇଚ୍ଛା ବ୍ୟବହାର ନାହିଁ । ୩୦୬
ଯେବେ ସୁନ୍ଦର ପୁରୁଷଙ୍କୁ ଦେଖନ୍ତି ପୁତ୍ର ହେଉ ଅବା ଭ୍ରାତ ।
ନାରୀମାନେ ବଡ ଉତ୍ସୁକ ହୁଅନ୍ତି ନାରଦ କହିଲେ ସତ । ୩୦୭
ଏହିକାଳେ ଲୀଳାବତୀ ପଲଙ୍କରେ ମହାଜନ ପୁତ୍ର ସଙ୍ଗେ ।
କଉତୁକ କଥାବାର୍ତ୍ତା ହୋଇକରି କ୍ରୀଡା କରୁଥିଲା ରଙ୍ଗେ । ୩୦୮
ଅକସ୍ମାତ ଉପଗତ ହେଲା ଧବ ତାକୁ ଦେଖି ସେ ଉଠିଲା ।
କେଶ ଧରିକରି ଗାଢେ କୋଳ କରି ମୁଖରେ ଚୁମ୍ବନ ଦେଲା । ୩୦
ସେହି ସମୟରେ ମହାଜନ ପୁତ୍ର ଛିଦ୍ର ପାଇ ପଳାଇଲା ।
ତାହା ଦେଖିକରି ପଡସା ଗୋଇଠି ଏରୂପେ ବାକ୍ୟ କହିଲା । ୩୧୦
ଏମନ୍ତ ବୋଲି ସେ ଗୋଇଠି କାରଣ ଜାଣି ଜାରକୁ ଜାଣିଲା ।
ଜାଣିକରି ପୁଣି ଗୋପନରେ ତାକୁ ବହୁ ଅର୍ଥଦଣ୍ଡ କଲା । ୩୧୧
ଏଣୁ ମୁଁ କହଇ ଏ କଥା ହେ ଚୂଡାକର୍ଣ୍ଣ ବୀଣାକର୍ଣ୍ଣ କହି ।
ଏ କ୍ଷୁଦ୍ର ମୂଷିକର ଏତେ ବଳକୁ ହେତୁ ଅଛି ଆନ ନାହିଁ । ୩୧୨
କ୍ଷଣେ ବିଚାରିଣ କହିଲେ ଏଠାରେ କାରଣ ଧନ ଅଟଇ ।
ଏ ବିଷୟ ନୀତ ବିଦ୍ୟାରେ କହିଛି ଶୁଣ ମୁଁ ତାହା କହଇ । ୩୧୩

ସବୁଠାରେ ସବୁକାଳେ ସବୁ ଲୋକ ଧନ ଥିଲେ ବଳବନ୍ତ ।
ଯେଉଁ ହେତୁରୁ ପାର୍ଥିବମାନଙ୍କର ଧନ ମୂଳ ଯେ ପ୍ରଭୁତ୍ୱ । ୩୧
ଏମନ୍ତ ବୋଲ୍ ସେ ପଣ୍ଡିତରେ ମୋର ଗାଡ ଖୋଳି ଧନ ନେଲେ ।
ସେହିଦନୁ ମୋର ଆହାର ଅଭାବେ ବଳ ଉତ୍ସାହ ରହିଲେ । ୩୧୫

ସେହିଦନୁ ତାର ଭକ୍ଷ୍ୟ ପାଏ ଅଳ୍ପ କଷ୍ଟିତ ହୋଇ ରହିଲି ।
ଦେଖି ଚୂଡାକର୍ଣ୍ଣ ପରିହାସ କରି ମୋତେ ଉଦ୍ଦେଶି ବୋଇଲେ । ୩୧୬
ଅର୍ଥରେ ଲୋକେ ବଳବନ୍ତ ହୁଅନ୍ତି ଅର୍ଥରେ ହୋଏ ପଣ୍ଡିତ ।
ଦେଖ ଏ ମୂଷିକ ପାପକୁ ଆପଣା ଜାତିରେ ହେଲା ସଙ୍ଗତ । ୩୧୭

ଧନହୀନ ଯେଉଁ ପୁରୁଷ ହୁଅଇ ସେ ହୁଅଇ କ୍ଷୁଦ୍ର ବୁଦ୍ଧି ।
ସବ କର୍ମ ତାର ଉଚ୍ଛନ୍ନ ହୁଅଇ ଯେମନ୍ତେ ଗ୍ରୀଷ୍ମେ କ୍ଷୁଦ୍ର ନଦୀ । ୩୧୮
ଯାର ଧନ ଅଛି ତାହାର ମିତ୍ର ଯେ ଯାଧନ ତାର ବନ୍ଧୁତ ।
ଯାହାର ଧନ ସେ ଲୋକରେ ପୁରୁଷ ଯାର ଧନ ସେ ପଣ୍ଡିତ । ୩୧୯

ଯାର ଧନ ଅଛି ସେ ଜନ କୁଳୀନ ତାକୁ ଗୁଣଜ୍ଞ କହନ୍ତି ।
ପଣ୍ଡିତ ଶାସ୍ତ୍ରୀ ସେହି ଦାତା ସୁନ୍ଦର କାଞ୍ଚନରୁ ସର୍ବେ ହୁନ୍ତି । ୩୨୦
ଅପୁତ୍ରର ଗୃହ ଶୂନ୍ୟ ହୋଇ ମିତ୍ର ରହିତର ସେହିପରି ।
ମୂର୍ଖ ଲୋକର ସମସ୍ତ ଦଶ ଶୂନ୍ୟ ଦରିଦ୍ରର ସବୁ ସରି । ୩୨୧

ଜାତି ଯାଉ ପାତାଳକୁ ଗୁଣ ଗଣ ତାହାର ତଳକୁ ଯାଉ ।
ସଦବୃତ୍ତି ପର୍ବତରୁ ପଡି ମରୁ କୁଳୀନତା ପୋଡିଯାଉ । ୩୨୨
ଶୂରପଣେ ବଜ୍ର ପଡୁ ପଛେ ମୋର କେବଳ ଧନରେ ଇଚ୍ଛା ।
ଯେଉଁ ଧନ ବିନା ଏତେ ଗୁଣମାନେ ସମସ୍ତେ ହୁଅନ୍ତି ତୁଚ୍ଛା । ୩୨୩

ଏହା ଚୂଡାକର୍ଣ୍ଣଠାରୁ ଶୁଣି ମୁହିଁ ବଶ୍ୱର କଲି ମୋ ଚିତ୍ତ ।
ଏଠାରେ ରହି ଏ ଚରିତ ପ୍ରକଟ ମୋର ନୋହିବା ଉଚିତ । ୩୨୪
ଧନ ନାଶ ମନ ତାପ ଗୃହେ ଯେଉଁ ଥିବ ଦୁଷ୍ଟ ଆଚରଣ ।
ପରବ୍ରିବ ଅନାଦର ଏମାନଙ୍କୁ ନ କରିବ ପ୍ରକାଶନ । ୩୨୫

ଅତ୍ୟନ୍ତ ବିମୁଖ ଦଇବ ହୋଇଲେ ବିନାଶ ଧନ ପୌରୁଷ ।
ସୁବୁଦ୍ଧି ଦରିଦ୍ର ଏହା ଦେଖିକରି କରିବ ବନରେ ବାସ । ୩୨୬
ପଣ୍ଡିତ ଲୋକ କେବେହେଁ ଦୀନ ନୋହି ମରଣ ତାହାର ଭଲ ।
ଉପାୟ କଲେ ସେ ଦହନ ଲଭଇ କେବେହେଁ ନୋହେ ଶୀତଳ । ୩୨

କୁସୁମ ଗୁଚ୍ଛ ପରି ଏ ଦୁଇ ଗତି ପଣ୍ଡିତ ଲୋକର ହୋଇ ।
ହୁଅଇ ସମସ୍ତ ମସ୍ତକ ଭୂଷିତ ବେଳେ ଅବା ଶୀର୍ଣ୍ଣ ହୋଇ । ୩୨୮
ଏଠାରେ ପ୍ରାର୍ଥନା କରିବାର ପୁଣ ଅତି ନିନ୍ଦିତ ହୋଇବ ।
ଯାହାକୁ ସମସ୍ତେ ପ୍ରାର୍ଥନା କରନ୍ତି ସେ ଯେ କବୁପେ ମାଗିବ । ୩୨

ଦରିଦ୍ର ଯେଉଁ ଲୋକ ତା ପ୍ରାଣମାନେ ଅଗ୍ନିରେ ଯିବାର ଭଲ ।
ଉପକାରହୀନ କୃପଣ ଲୋକକୁ ମାଗିବାର ହୋଏ ଶଲ । ୩୩୦
ଦରିଦ୍ର ହେଲେ ଅଧିକ ଲଜ ହୋଇ ଲଜ୍ଜରୁ ଉତ୍ସାହ ଯାଇ ।
ଉତ୍ସାହ ରହିଲେ ପରାଭବ ପାଇ ତହିଁରୁ ନିର୍ବେଦ ହୋଇ । ୩୩୧

ନିର୍ବେଦବନ୍ତ ଲୋକର ଶୋକ ହୋଇ ଶୋକ ହେଲେ ବୁଦ୍ଧି ଯାଇ ।
ବୁଦ୍ଧି ଗଲେ ନାଶ ଦାରିଦ୍ର୍ୟ ସମସ୍ତ ବିପତ୍ତିର ହେତୁ ହୋଇ । ୩୩୨
ମଲାଲୋକ ଅପେକ୍ଷାରୁ ସେ ଦରିଦ୍ରେ ଅତି ନିନ୍ଦିତ ହୁଅଇ ।
ସେହି ହେତୁରୁ ସେ ଦରିଦ୍ର ଲୋକକୁ କେହି କଥା ନ କହଇ । ୩୩

ଏକ ଦରିଦ୍ର ଶ୍ମଶାନକୁ ଯାଇଣ ଶବକୁ ବୋଇଲା ମିତ ।
ଉଠ ଦାରିଦ୍ର୍ୟଭାର ମୋର ବହି ତୁ ହୋଇଅଛୁ ବଡ ଶ୍ରାନ୍ତ । ୩୩
ତୋ ମରଣ ସୁଖ ମୋତେ ଦିଅ ବେଗେ ଶ୍ମଶାନେ ଶବ ଶୁଣିଲା ।
ଧନ ନ ଥିବାରୁ ମରଣ ଭଲ ସେ ଜାଣିଣ ତୁନି ହୋଇଲା । ୩୩୫

ମିଥ୍ୟା କହିବା ଯା ତହିଁରୁ ମଉନ ଭଲ କ୍ଳୀବ ଯେ ହେବାର ।
ପର ସ୍ତ୍ରୀ ଇଚ୍ଛାରୁ ପ୍ରାଣତ୍ୟାଗ ଭଲ ସଙ୍ଗ ହେବାରୁ ଖଲର । ୩୩୬
ଭିକ୍ଷା ମାଗି ଖାଇବାର ଭଲ କଥା ପରଧନ ନୋହେ କିଛି ।
ଋଷିମାନେ ସବୁ କହି ଯେ ଅଛନ୍ତି ଏକଥା ନୀତିରେ ଅଛି । ୩୩୭

ାଉ ସେବା ଯେତେ ସବୁ ଅଦରକୁ ନାଶଇ କ୍ରୋଧ ଅନ୍ଧାର ।
ୃଉହର କଥା ବୁଦ୍ଧିତକୁ ଚେତେ ଗୁଣ ନାଶେ ମାଗିବାର । ୩୩୮
ସହୁ ହେତୁରୁ କ ମୁ ପର ଅମୃତେ ପ୍ରାଣକୁ ରକ୍ଷା କରୁବ ।
ଦୈବ ଦୁଃଖ ଉପସ୍ଥିତ ହେଲା ମୁ ମୃତ୍ୟୁ ମୁଖରେ ମରବ । ୩୩୯

ବ୍ୟାକରଣ ଶାସ୍ତ୍ର ନ ପଢି ପାଣ୍ଡିତ୍ୟ କରନ୍ତି ଦେଇ ମୈଥୁନ ।
ଭୋଜନ ବିଷୟେ ପରକୁ ଅପେକ୍ଷା ଏ ପୁରୁଷ ବଡ଼ମୂଣ । ୩୪୦
ରୋଗୀ ଯେ ପ୍ରବାସୀ ପରଅନ୍ନ ଭୋକୀ ପର ଗୃହରେ ରହଇ ।
ଜୀବନ ଥିଲେ ହେ ମଲାପ୍ରାୟ ଜାଣ ମଲେ ସେ ଶ୍ରମ ହରଇ । ୩୪୧

ଏମନ୍ତ ବିଚାରି ଲୋଭରେ ମୁ ପୁଣି ଭକ୍ଷ୍ୟ ପାଏ ଦେଖି ଅନ୍ନ ।
ପୁଣି ମୁ ଖାଇବି ବିଚାରି ତ ଅନ୍ତେ ତଳେ ପଡ଼ିଲି ସେ କ୍ଷଣ । ୩୪୨
ଲୋଭରୁ ବୁଦ୍ଧି ବିଚଳିତ ହୁଅଇ ଲୋଭରୁ ତୃଷା ଜନ୍ମଇ ।
ତୃଷାର୍ତ୍ତ ହୋଇଲେ ଅତି ଦୁଃଖ ପାଇ ଇହ ପରଲୋକେ ଯାଇ । ୩୪୩

ଏଥୁଁ ଅନ୍ତେ ବଣଦଣ୍ଡକୁ ମୋ ପରେ ପିଟିଲା ସେ ବୀଣାକର୍ଣ୍ଣ ।
ଦେଖି ଜାଣିଲି ମୁ ଲୋଭ ଅସନ୍ତୁଷ୍ଟ ଆତ୍ମଦ୍ରୋହୀ ସେ ସମ୍ପୂର୍ଣ୍ଣ । ୩୪୪
ଯାହାର ମାନସ ସନ୍ତୁଷ୍ଟ ହୁଅଇ ସବୁ ସମ୍ପତ୍ତି ତାହାର ।
ଚର୍ମ ଛାଇଲା ପ୍ରାୟ ଭୂମି ମଣଇ ପାଣ୍ଡୋଇ ପାଦ ଯେ ନର । ୩୪୫

ଯେ ନର ସନ୍ତୁଷ୍ଟ ଶାନ୍ତଚିତ୍ତ ଅଟେ ଜାଣ ତାର ଅଛି ସୁଖ ।
ଯେ ଧନୀ ଲୋଭରେ ଏଣେତେଣେ ଧାଏଁ ତାହାର ସମସ୍ତ ଦୁଃଖ । ୩୪୬
ଯେଉଁ ଲୋକ ସବୁ ଆଶାକୁ ଛାଡ଼ଣ ବିଷୟେ ବିରାଗ କଲା ।
ଜାଣ ସେ ସବୁ ବେଦ ଶାସ୍ତ୍ର ପଢିଛି ସବୁ କର୍ମ ସେ ଅର୍ଜିଲା । ୩୪୭

ଜାହାର ଅନୁସରଣକୁ ନ କରି କାହାର ମୁଖ ନ ଦେଖି ।
ପାପ ବଚନ ଯେ କେହୁ କହୁ ନାହିଁ ତା ଜୀବନ ଧନ୍ୟ ଲେଖି । ୩୪୮
ଅତି ଲୋଭେ ଯେଉଁଜନ ଦୂର ଯାଇ ଦୂର ତାହାର ନିକଟ ।
ସନ୍ତୁଷ୍ଟ ଜନର କରେ ଥିଲା ଧନେ ଆଦର ହୁଅଇ ନଷ୍ଟ । ୩୪୯

ସେହି ହେତୁରୁ ସର୍ବଥା ଆପଣାର କାର୍ଯ୍ୟ କରିବା ଉଚିତ ।
ଏହା ବଟୁର ଆପଣା କାର୍ଯ୍ୟ ସିଦ୍ଧି ଉପାୟରେ ଦେଲ ଚିତ୍ତ । ୩୫୦
କୁଧ କୁଳ ଅର୍ଥେ ଜଣକୁ ଛାଡ଼ିବ ଗ୍ରାମ ଅର୍ଥେ କୁଳ ଛାଡ଼େ ।
ଜନପଦ ଅର୍ଥେ ଗ୍ରାମକୁ ଛାଡ଼ିବ ଆତ୍ମାର୍ଥେ ପୃଥ୍ୱୀ ନ ମାଡ଼େ । ୩୫୧

ଏମନ୍ତେ ଅନେକ ପ୍ରକାରେ ବଟୁର ବନକୁ ଅଇଲ ମୁହିଁ ।
କେଉଁଣସି ପୁଣ୍ୟେ ପାଇ ତୁମ୍ଭ ସ୍ଥାନ ମିଶ ସ୍ନେହ ଭରେ ରହି । ୩୫୨
ଯେଉଁ ହେତୁରୁ ସଂସାର ବିଷବୃକ୍ଷ ସ୍ୱାଦୁ ଏ ଫଳ ଯୋଡିଏ ।
କାବ୍ୟ ଅମୃତ ରସର ଆସ୍ୱାଦନ ସଜ୍ଜନ ସଙ୍ଗମ ହୋଏ । ୩୫୩

ପଦ୍ମପତ୍ର ଗତ ଜଳ ବିନ୍ଦୁ ପ୍ରାୟ ଅତି ଚଞ୍ଚଳ ଏ ଜୀବ ।
ସାଧୁଜନ ସଙ୍ଗ ତରଣୀ ମିଳିଲେ ତରଇ ଏ ଭବାର୍ଣ୍ଣବ । ୩୫୪
ମନ୍ଥର କହୁଛି ଶୁଣ ହିରଣ୍ୟକ ଅତି ସଞ୍ଚୟିତ କଲ ।
ସେହି ହେତୁରୁ ଏ ଧନ କ୍ଷୟ ହେଲା ତୁମ୍ଭେ ହେଲ କଲବଲ । ୩୫୫

ଧନ ଅର୍ଜି ଧନ ରକ୍ଷିକର ତାକୁ ବଢାଇ ସତ୍ପାତ୍ରେ ଦେଇ ।
ଯେସନେ ଜଳଧର ତଡ଼ାଗରୁ ଜଳ ନେଇ ସବୁଠାରେ ଦେଇ । ୩୫୬
ଭୋଗ ନ କରି ଯେଉଁଧନ କୃପଣ ରଖେ ସେ ସର୍ବ ଜନର ।
ମୋହର ଧନ ଏ ଯେ ଏମନ୍ତ କହେ ଧନ ନାଶେ ଦୁଃଖ ତାର । ୩୫୭

ଯେଉଁଜନ ତ୍ୟାଗ ଭୋଗ ନ କରଣ ମୁଁ ଧନବନ୍ତ ବୋଲଇ ।
ତେବେ ସେହି ଧନେ ଆମ୍ଭେ ସର୍ବଜନେ ଧନବନ୍ତ ନ ବୋଲଇ । ୩୫୮
ଦାନ ପ୍ରିୟ ବାକ୍ୟ ଥାଇ ଜ୍ଞାନ ଗର୍ବ ନ ଥାଇ କ୍ଷମା ସହିତ ।
ଶୂରପଣ ତ୍ୟାଗ ଥାଇ ଧନ ବୃଦ୍ଧି ଏ ଚାରି ଲୋକେ ଉଚିତ । ୩୫୯

ଧନ ସଞ୍ଚୟକୁ ନିତ୍ୟରେ କରିବ ଅତି ସଞ୍ଚୟ ନ କରି ।
ଅତଏବ ସଞ୍ଚୟ କରି ଧନୁର୍ଗୁଣ ଲେହି ଶୃଗାଳ ସେ ମରି । ୩୬୦
ହିରଣ୍ୟକ ପୃଚ୍ଛେ କଚ୍ଛପେ ଏକଥା କହି ହେ ମିତ ମନ୍ଥର ।
ମନ୍ଥର କହଇ ଶୁଣ ଆହେ ମିତ ଏକଥା ଅଛି ସୁନ୍ଦର । ୩୬୧

କଲ୍ୟାଣ କଟକେ ଭଇରବ ନାମେ ପୂର୍ବେ ଏକ ବ୍ୟାଧ ଥିଲା ।
ସେହି ଏକ ଦିନେ ବନ୍ୟାରଣ୍ୟେ ମୃଗ ମାରନ୍ତେ ଦାଣ୍ଡ ଦେଖିଲା । ୩୭୨
ମୃଗକୁ ଭୂମିରେ ଥୋଇଣ ଶୂକର ଉପରେ ମାଇଲା ଶର ।
ସେ ବରାହ ଅପେ ଗର୍ଜି ମୁଷ୍ଟି ଦେଶେ ବ୍ୟାଧକୁ କଲା ପ୍ରହାର । ୩୭୩
ସେ ବ୍ୟାଧ କାଟିଲା ବୃକ୍ଷ ପ୍ରାୟ ଭୂମି ଉପରେ ପଡିଣ ମଲା ।
ଏହିରୂପେ ଅତି ଲୋଭ କଲେ ନର ମରେ ମୋ ପ୍ରାୟ କହିଲା । ୩୭୪
ଜଳ ଦହନ ଯେ ବିଷ ଶସ୍ତ୍ର କ୍ଷୁଧା ରୋଗ ଗିରିରୁ ପତନ ।
ଏତେକମଧ୍ୟରୁ ଏକ ହେତୁ ପାଇ ନିତ୍ୟରେ ମରନ୍ତି ଜନ । ୩୭୫
ଏଥିଅନ୍ତରେ ଦୀର୍ଘରାବ ନାମରେ ଶୃଗାଳ ଆହାର ପାଇଁ ।
ସେଠାରେ ପ୍ରବେଶ ହୋଇ ସେମାନଙ୍କୁ ଦେଖି ମନେ ବିଚାରଇ । ୩୭୬
ଅଚିନ୍ତିତ ଦୁଃଖମାନେ ଯେଉଁରୂପେ ସର୍ବଜନର ହୁଅନ୍ତି ।
ସୁଖମାନଙ୍କୁ ସେହିରୂପେ ଜାଣୁଛୁ ବିଧାତାର ବଳ ଅତି । ୩୭୭
ଅହୋ ମହାଭୋଜ୍ୟ ପ୍ରାପ୍ତି ହେଲା ମୋର ଏକ ମାସ ନରମାଂସ ।
ମୃଗ ଶୂକର ଦୁଇ ମାସ ଭୋଜନ ଅଂଗ ଲେହି ଧନୁ ପାଶ । ୩୭୮
ଏମନ୍ତ କହିଣ ସେହି ଦୀର୍ଘରାବ ଗୁଣରକତ ଲିହିଲା ।
ଛିଡ ଧନୁ ଗୁଣ ଧନୁ ଛିଦେ ବାଜ ଗର୍ଜି ଦୀର୍ଘରାବ ମଲା । ୩୭୯
ଏହି ହେତୁରୁ ମୁଁ ତୁମ୍ଭଙ୍କୁ କହିଲି ଅତି ସଞ୍ଚୟ ନ କର ।
ଜଳେଁ ଦୀର୍ଘରାବ ଜମ୍ବୁକ ପରାଏ ଅକାଳରେ ନଷ୍ଟ ମର । ୩୭୦
ଯେଉଁ ଧନ ଦେଇ ବଣିଜ୍ଞ ଲୋକଙ୍କୁ ଯାହା ଖାଇ ଦିନେ ଦିନେ ।
ସେହି ତାକୁ ଅମ୍ଭେ ଧନ ବୋଲି କହୁ ଶେଷ କାହାର ରକ୍ଷଣେ । ୩୭୧
ହେଉ ବର୍ତ୍ତମାନ ଗଲାଂ କଥା ଗଲା ତାହା କହିଲେ କି ହେବ ।
ଏଣିକି ଅବା କି ବିଚାର କରିବା ଯେ ହେବାର ସେତ ହେବ । ୩୭୨
ଯେ ମିଳିବ ନାହିଁ ତା ନ ବିଚାରନ୍ତି ନାଶ ଗଲେ ନାହିଁ ଶୋକ ।
ବିପତ୍ତେ ପଡିଲେ ଧୈର୍ଯ୍ୟକୁ ଭଜନ୍ତି ନିଶ୍ଚୟ ପଣ୍ଡିତ ଲୋକ । ୩୭୩

ସେହି ହେତୁରୁ ଏ ବିପତ୍ତି କାଳରେ ତୁମ୍ଭେ ନ ଛାଡ ଉତ୍ସାହ ।
ଉତ୍ସାହ ନ ଥିଲେ କାର୍ଯ୍ୟ ସିଦ୍ଧ ନୋହେ ଦୈବ ଯେବେ ନୋହେ ସହ ୭୬।
ଶାସ୍ତ୍ର ପଢି ଯେବେ କାର୍ଯ୍ୟକ୍ଷମ ନୋହେ ସେ ପୁରୁଷ ମୂର୍ଖ ଜାଣ ।
ଯେଉଁ ପୁରୁଷ କାର୍ଯ୍ୟକ୍ଷମ ହୁଅଇ ସେହି ପୁରୁଷ ସୁଜାଣ । ୭୬୫

ରୋଗବନ୍ତ ଜନ ଔଷଧମାନଙ୍କୁ ଯେବେ ମନେ ବର୍ଣ୍ଣିଇ ।
ତେବେ କି ଔଷଧ ନାମ ପଠନରେ ରୋଗୀ ରୋଗ ମୁକ୍ତ ହୋଇ । ୭୬
ଉଦ୍ୟମରେ ଭଗ୍ନ କରଇ ଯେ ତାର ଶାସ୍ତ୍ର କି କାର୍ଯ୍ୟ କରଇ ।
ଅନ୍ଧ ଯେ ତାହାର ହସ୍ତେ ଦୀପ ଥିଲେ ଦ୍ରବ୍ୟ କି ପ୍ରକାଶ ହୋଇ । ୭୭

ଭଲ ଦଶାରେ ଭଲ ପ୍ରୀତ ହୁଅଇ ହୀନ ଦଶାରେ ସେ ହୀନ ।
ଏହି ହେତୁରୁ ଯେ ସ୍ୱସ୍ଥାନ ବିସ୍ଥାନ ପ୍ରୀତ ଅପ୍ରୀତ କାରଣ । ୭୬୮
ସ୍ଥାନ ଭ୍ରଷ୍ଟ ହେଲେ ଶୋଭାକୁ ନ ପାନ୍ତି ଦନ୍ତ କେଶ ନଖ ନରେ ।
ଏମନ୍ତ ଜାଣିଣ ବୁଦ୍ଧିମନ୍ତ ଜନ ସ୍ୱସ୍ଥାନ ତ୍ୟାଗ ନ କରେ । ୭୬୯

ସ୍ଥାନରେ ଥାଇ ଯେଉଁ ପଦ୍ମ ତାହାର ମିତ୍ର ବରୁଣ ଭାସ୍କର ।
ସ୍ଥାନ ଭ୍ରଷ୍ଟ ହେଲେ ପଦ୍ମର ସେ ଦୁହେଁ ହୁଅନ୍ତି ପୁଣି ଶୋଷକର । ୭୮
ଏ ଦୁଇ ଶ୍ଳୋକ ଯାହା କହି ଅଛଇ ଏ କାପୁରୁଷ ବଚନ ।
କେହି ଋଷିମାନେ ଏ ବଚନ ପରେ କରନ୍ତି ପୁଣି ଦୂଷଣ । ୭୮୧

ସମର୍ଥ ପୁରୁଷ ସିଂହ ଗଜମାନେ ସ୍ଥାନ ଛାଡ ଶୋଭା ପାନ୍ତି ।
କାକ କାପୁରୁଷ ଖଳଜନମାନେ ଅପଣା ସ୍ଥାନେ ମରନ୍ତି । ୭୮୨
ବୀରା ପଣ୍ଡିତର ବିଷୟ କେ ନୋହେ ବିଦେଶ ନାହିଁ ତାହାର ।
ଯେଉଁ ଦେଶକୁ ସେ ଆଶ୍ରୟ କରଇ ସେ ଦେଶ ହୋଏ ତାହାର । ୭୮

ଦେଖ ନଖ ଦନ୍ତ ପ୍ରହରଣେ ସିଂହ ବନରେ ପ୍ରବେଶ ହୋଇ ।
ଗଜଙ୍କୁ ମାରଣ ତାହାର ରୁଧିର ପିଇ ଜୀବନ ରଖଇ । ୭୮୪
ଯେସନେ ଭେକ କୂପ ନିକଟ କୁଣ୍ଡକୁ ସରକୁ ପକ୍ଷୀ ଗମଇ ।
ଉଦ୍ୟୋଗୀ ଜନ ପୁରୁଷଙ୍କୁ ସେରୂପେ ସମସ୍ତ ସମ୍ପତ୍ତି ଯାଇ । ୭୮୫

ାଇବ ପଡଲେ ସୁଖକୁ ସହିବ ଦଇବ ଦୁଃଖକୁ ସହି ।
ଙ୍କ ପ୍ରାପ୍ତ ହୋଇ ଉଲଟ ପାଲଟ ସୁଖ ଦୁଃଖ ଏ ଯେ ଦୁଇ । ୩୮୬
ଯେ ଜନ ଉଦ୍ୟମୀ ଶୀଘ୍ର କାରୁକର୍ମ ଜାଣଇ ବ୍ୟସନ ନାହିଁ ।
ର ଉପକାରୀ ମାନୀ ଦୃଢ଼ ମୈତ୍ରୀ ତାପରେ ଲକ୍ଷ୍ମୀ ବସଇ । ୩୮୭

ୀର ଯେଉଁ ଲୋକ ସେ ଧନ ନ ଥାଇ ବହୁ ବହୁ ଦୁଃଖ ପାଇ ।
ୃପଣ ଲୋକ ଯେ ସେ ଧନ ଥିଲେହେଁ ପରଭବ ସ୍ଥାନ ହୋଇ । ୩୮୮
ୋକର ଅଧର ପ୍ରଭାବର୍ ହୋଏ ଧନ ଅଲଙ୍କାର ଗୁଚ୍ଛ ।
ୁବର୍ଣ୍ଣମାଳ କଣ୍ଠରେ ଲମ୍ବିଥିଲେ କୁକ୍କୁର ହୋଏ କି ସ୍ୱଚ୍ଛ । ୩୮୯

ୁହିଁ ଧନବନ୍ତ ବୋଲି ନୁହ ମତ୍ତ ତାହା ନାଶେ ଦୁଃଖ ଜାଣ ।
ଯେଣୁ ମନୁଷ୍ୟର ଧନର ଅଗମ କର କନ୍ଦୁକ ସମାନ । ୩୯୦
ଦେଖ ମେଘ ଛାୟା ଖଳଲୋକ ପ୍ରୀତି ନବ ଧାନ୍ୟ ନାରୀ ଜନ ।
ଳ୍ପକାଳ ଏ ଉପଭୋଗ ହୁଅନ୍ତି ଯଉବନ ବହୁଧନ । ୩୯୧

ାଣୀ ରକ୍ଷଣେ ଅଟଣେ ଯେବା ନୋହେ ଦଇବର ସେ ନିର୍ମାଣ ।
ଗର୍ଭରୁ ଜନମ ହେଲା ମାତ୍ରେ ଦେଖ ମାତାର ପ୍ରସବେ ସ୍ତନ । ୩୯୨
ଯେଉଁ ଦଇବ ଶୁକ୍ଳ କଲା ହଂସକୁ ଶୁକକୁ କଲା ହରିତ ।
ତାହାର ଜୀବନ ବୃତ୍ତିକି କରୁ ସେ ଯେ ମୟୂର କଲା ଚିତ୍ର । ୩୯୩

ୈଷ ଧନ କଥା ଶୁଣ ତା ଅର୍ଜନେ ଦୁଃଖ ବିନାଶରେ ଦୁଃଖ ।
ଯେଉଁ ଧନର ସ୍ଥିତିରେ ମୋହ ହୋଏ ସେ ଧନରେ କେଉଁ ସୁଖ । ୩୯୪
ଧର୍ମ ନିମିତ୍ତରେ ଯାର ଧନେ ଇଚ୍ଛା ତାରତ ଅନିଚ୍ଛା ବର ।
ପଙ୍କେ ପଶିଲେ ତା ଯାହାକୁ ଧୋଇବା ତାକୁ ନ ଛୁଇଁବା ଭଲ । ୩୯୫

ଯେପରି ଆକାଶରେ ମାଂସ ଥିଲେ ପକ୍ଷୀ ଭୂମିରେ ଶ୍ୱାପଦମାନେ ।
ସଲିଳରେ ମତ୍ସ୍ୟମାନେ ଯେସନ ଖାନ୍ତି, ସେରୂପେ ଧନିକମାନେ । ୩୯୬
ରାଜା ଜଳ ଅଗ୍ନି ଚୋର ଜ୍ଞାତିଠାରୁ ଅଛି ଭୟ ଧନିକର ।
ଯେସନେ ସବୁକାଳେ ମୃତ୍ୟୁଠାରୁ ଭୟ ଅଛି ସବୁ ପ୍ରାଣିଙ୍କର । ୩୯୬

ଧନଲୋଭ ଯେହ୍ନୁ ଛାଡ଼ିଲା ତେବେ ସେ ଦରିଦ୍ର ଈଶ୍ୱର ସମ ।
ଯେବେ ଧନ ଲୋଭ କରଇ ମନୁଷ୍ୟ ତେବେ ଦାସରୁ ସେ କମ । ୩୯୮
ଯେ ଜନ ନ ଦେଇ ଭୋଗ ନ କରଇ କି ହେବ ତାହାର ଧନ
ସ୍ୱଉପୁକ୍ତ ଯେ ବଳରେ ନ ବାଧଇ ସେ କି ବଳବନ୍ତ ଜାଣ । ୩୯୯

ଯେ ଶାସ୍ତ୍ର ପଢ଼ିଣ ଧର୍ମ ଆଚରଣ ନ କରେ ତାର କି ଶ୍ରୁତ ।
ଯେ ଜନ ଇନ୍ଦ୍ରିୟମାନଙ୍କୁ ନ ଜିଣେ ତାହାର ଅବା କି ଜ୍ଞାତ । ୪୦୦
ବହୁତ କହିବାରୁ ଅବା କି କାର୍ଯ୍ୟ ଆମ୍ଭ ସଙ୍ଗେ ନିଅ ବନ ।
ଏଠାରେ ଆମ୍ଭେ ସମସ୍ତେ ରହିବା ଯେ କେବେହେଁ ନୋହିବା-ଭିନ୍ନ । ୪୦୧

ଯେଣୁ ବଡ଼ ଲୋକମାନଙ୍କର ସ୍ନେହ ମରିବା ପର୍ଯ୍ୟନ୍ତ ରହେ ।
ନିମିତ୍ତରେ କୋପ ଯେବେ ହୋଏ ସେହି କ୍ଷଣଭଙ୍ଗୁର ଯେ ହୋଏ । ୪୦୨
ତ୍ୟାଗ କରନ୍ତି ଯା ତାକୁ ନ ଛୁଅନ୍ତି ପୁଣି ସେମାନେ କାଳରେ ।
ଏହିରୂପେ ପରକ୍ଷସ୍ୱ କରିଅଛି ବିଧାତା ଏହି ସଂସାରେ । ୪୦୩

ଲଘୁପତନକ କାକ କହୁଅଛି ଧନ୍ୟ ତୁମ୍ଭେ ସେ ମନ୍ଥର ।
ତୁମ୍ଭଠାରେ ଯେତେ ଗୁଣ ଅଛି ସେହି ଆଶ୍ରୟ ସର୍ବଲୋକର । ୪୦୪
ସାଧୁମାନେ ସାଧୁମାନଙ୍କ ବିପତ୍ତି ତାରଣରେ ଅଗ୍ରସର ।
ପଙ୍କଲଗ୍ନ ଗଜ ଉଦ୍ଧାର କରଣେ ଗଜମାନେ ଧୁରନ୍ଧର । ୪୦୫

ଭୂମିରେ ମନୁଷ୍ୟମାନଙ୍କ ମଧ୍ୟରେ ସେହି ଉତ୍ତମ ପୁରୁଷ ।
ଯାହାଠାରେ ଅର୍ଥୀ ଶରଣାର୍ଥୀ ଜନ ଇଚ୍ଛା ନୁହଇ ବିନାଶ । ୪୦୬
ସେଠାରେ ସମସ୍ତେ ସ୍ୱେଚ୍ଛା ବିହାରରେ ସନ୍ତୋଷରେ ସୁଖେ ଥିଲେ ।
ଏଥୁଅନ୍ତେ ଚିତ୍ରାଙ୍ଗ ମୃଗ ଭୟରେ ସେଠାରେ ଆସି ମିଳିଲେ । ୪୦୭

ପଚ୍ଛେ କେହି ଆସୁଅଛି ଭୟେ କୂର୍ମ ମନ୍ଥର ଜଳକୁ ଗଲା ।
ବୃକ୍ଷାଗ୍ରକୁ କାକ ହିରଣ୍ୟକ ଗର୍ତ୍ତ ମଧ୍ୟକୁ ବେଗେ ଚଳିଲା । ୪୦୮
ଏଥୁଅନ୍ତେ କାକ ନିରେକ୍ଷି ଚାହିଁଲା ଭୟ ହେତୁ ନ ଦେଖିଣ ।
ମିଳିଲା ସର ନିକଟେ ଆସି ସର୍ବେ କଲେ ସେଠାରେ ମେଳନ । ୪୦୯

କୂର୍ମ କହୁଅଛୁ ଅହେ ମୃଗ ରହି ସବୁ କୁଶଳ ତୁମ୍ଭର ।
ମନକୁ ଗ୍ରହଣ ଉଦକ ଅହାର ସୁଖେ ଅନୁଭବ କର ।୪୧୦
ଏଠାରେ ବସି ଅମୃତ ଏ ସ୍ଥାନକୁ ପବିତ୍ର କର ଅପଣ ।
ଯାଇବାରେ ବଡ଼ ଶ୍ରାନ୍ତ ହୋଇଅଛ କର ଶ୍ରମର ହରଣ । ୪୧୧
ଚିତ୍ରାଙ୍ଗ କହୁଛୁ ବ୍ୟାଧ ଭୟ ପାଇ ତୁମ୍ଭଙ୍କୁ ଶରଣ ଯାଇ ।
ତୁମ୍ଭମାନଙ୍କ ସହାୟରେ ଏଠାରେ ନିବାସ ଇଚ୍ଛା କରଇ । ୪୧୨
ଶୁଣି ହିରଣ୍ୟକ କହଇ ବଚନ ଅମୃତାରେ ମିତ୍ରପଣେ ।
ରହିବାରେ ଏତ ସ୍ୱଭାବରେ ସିଦ୍ଧ କହିଛନ୍ତି ଋଷିମାନେ । ୪୧୩
ଏକସ୍ଥାନେ ଜନ୍ମ ପିଉଷୀ ମାଉଷୀ ପିତୃକୁଳ କ୍ରମାଗତ ।
ବିପତ୍ତିରୁ ଯାକୁ ରକ୍ଷାକରଇ ଏ ଯେ ଚତୁର ପ୍ରକାରନ୍ତି ମିତ । ୪୧୪
ସେହି ହେତୁରୁ ଆପଣା ଗୃହ ପ୍ରାୟ ରହ ତୁମ୍ଭେ ଏ ସ୍ଥାନରେ ।
ତାହା ଶୁଣି ମୃଗ ଜଳପାନ କରି ବସିଲା ବୃକ୍ଷ ତଳରେ । ୪୧୫
ମନ୍ଥରଂ କହଇ ସଖେ ମୃଗ ତୁମ୍ଭେ ଭୟ ପାଇଲ କାହିଁକି ।
ଏତେ ନିର୍ଜନ ବନକୁ ବ୍ୟାଧମାନେ କଦାଚିତ ଅସନ୍ତିକି । ୪୧୬
ମୃଗ କହୁଅଛୁ କଳିଙ୍ଗ ଦେଶରେ ନୃପରୁକ୍ମାଙ୍ଗଦ ନାମ ।
ସେହି ଦିଗ୍ବିଜୟ କରି ଚନ୍ଦ୍ରଭାଗାତୀରରେ କରଛୁ ବିଶ୍ରାମ । ୪୧୭
ପ୍ରାତଃକାଳେ କର୍ପୂର ସର ସମୀପ ଅସିବେ ବାର୍ତ୍ତା ବ୍ୟାଧର ।
ସେହି ହେତୁରୁ ପ୍ରାତରେ ଭୟ ହେବ ଏଥିକି କର ବିଚାର । ୪୧୮
ଶୁଣି ମନ୍ଥର ସଭୟ ହୋଇ କହେ ଯିବ ମୁ ଅନ୍ୟ ସରକୁ ।
କାକ ମୃଗ ଦୁହେଁ ଅଛ ହେଉ ଯାଅ ବୋଲି କହିଲେ ତାହାକୁ । ୪୧୯
ଶୁଣି ବିଚାରଇ ହିରଣ୍ୟକ ମୂଷା କହଇ ଶୁଣ ବଚନ ।
ପୁଣି ଜଳାନ୍ତର ପ୍ରବେଶେ ମନ୍ଥର କୁଶଳ ହେବ କି ଜାଣ । ୪୨୦
ଜଳଜନ୍ତୁମାନଙ୍କର ଜଳେବଳ ଦୁର୍ଗ ଦୁର୍ଗବାସୀ ବଳ ।
ପଦାତମାନଙ୍କର ବଳ ସ୍ୱଭୂମି ମୂଳସ୍ଥାନ ରାଜା ବଳ । ୪୨୧

ଏରୂପେ କହି ପୁଣି ସେ କହୁଅଛି ସ୍ଥାନ ଛାଡଣ ମନ୍ତର ।
ସ୍ଥଳେ ଯିବାବେଳେ କି ମଙ୍ଗଳଅଛି କହ ତୁମ୍ଭେ ମିତ୍ରବର । ୪୧୧
ଅପଣା ଭାର୍ଯ୍ୟାଙ୍କୁ ପର ଆଲିଙ୍ଗନ କଲା ଦେଖି ମହାଜନ ।
ପୁଣି ଯେଉଁରୂପେ ଦୁଃଖୀ ହୋଇଥିଲା ତୁମ୍ଭେ ହେବ ତଥା ଜାଣ । ୪

ମୃଗ କୂର୍ମ କାକ ପଶୁରଲେ ମିତ କିରୂପେ ହୋଏ ଏକଥା ।
ହିରଣ୍ୟକ କହେ ତୁମ୍ଭେମାନେ ଶୁଣ ଛଡ଼ୁ ତୁମ୍ଭ ମନ ବ୍ୟଥା । ୪୧
କାନ୍ୟକୁବ୍ଜ ଦେଶେ ବୀରସେନ ନାମ ପୂର୍ବେ ଏକ ନୃପ ଥିଲା ।
ସେ ବୀରପୁର ନଗରେ ଅଧିକାର ତୁଙ୍ଗବଳଙ୍କୁ ଯେ ଦେଲା । ୪୧୫

ସେ ରାଜା ପୁଣି ମହାଧନ ତରୁଣ ସ୍ୱ ନଗରେ ଭ୍ରମୁଥିଲା ।
ଅତି ଯଉବନ ଧନୀ ସୁତ ବଧୂ ଲାବଣ୍ୟବତୀ ଦେଖିଲା । ୪୧୬
ଏଥୁ ଅନ୍ତରେ ସେ ସ୍ୱଗୃହକୁ ଯାଇ ସ୍ମରଣାକୁଳ ମନ ।
ତୁଙ୍ଗବଳ ପୁଣି ତାହା ସମୀପକୁ ଦୂତୀକି କଲା ପ୍ରେରଣ । ୪୧୭

ସେ ଲାବଣ୍ୟବତୀ ସୁନ୍ଦର ସେ ତୁଙ୍ଗବଳକୁ ଦେଖି ଲୋଚନେ ।
କନ୍ଦର୍ପ ଶର ଜର୍ଜ୍ଜରିତ ହୃଦୟେ ଭାଳୁ ଥାଇ ଏକ ମନେ । ୪୧୮
ନାରୀମାନଙ୍କର କେ ଅପ୍ରିୟ ହୋଇ ପ୍ରିୟ ହୋଇ ନାହିଁ କେହି ।
ଗାଈ ନୂଆ ନୂଆ ତୃଣ ପ୍ରାପ୍ୟ ବନେ ନୂଆ ନୂଆ ଇଚ୍ଛା ହୋଇ । ୪୧

ଏଥୁ ଅନନ୍ତେ ଦୂତୀ ବଚନ ଶୁଣି ଯେ ଲାବଣ୍ୟବତୀ କହଇ ।
ପତିଙ୍କ ନ କହି କେମନ୍ତ ଏକଥା ମୁ ଅଙ୍ଗୀକାର କରଇ । ୪୨୦
ଯେଉଁ ଭାର୍ଯ୍ୟା କର୍ମେ ଦକ୍ଷା ଯେଉଁ ଭାର୍ଯ୍ୟା ପତିବ୍ରତା ଯେ ହୁଅଇ ।
ଯେଉଁ ଭାର୍ଯ୍ୟା ପତିପ୍ରାଣା ପୁଣିବଣି ସେ ଭାର୍ଯ୍ୟା ଭାର୍ଯ୍ୟା ବୋଲାଇ । ୪୨

ଯାହାଠାରେ ପତି ସନ୍ତୋଷ ନୁହଇ ସେହି ଭାର୍ଯ୍ୟା ନ ବୋଲାଇ ।
ଅଗ୍ନି ସାକ୍ଷୀ କରି ବିବାହ ହେତୁରୁ ଭାର୍ଯ୍ୟାର ଶରଣ ସେହି । ୪୨୧
ଏଣୁ ପତି ଆଜ୍ଞା ଦେବ ଯେବେ ମୋତେ କରିବ ହେଲେ ଅନ୍ୟାୟ ।
ଶୁଣି ଦୂତୀ କହେ ଏକଥାତ ସତ୍ୟ ଯାଉଛି ମେଲାଣି ଦିଅ । ୪୨୨

ଣ ଏସି ସବୁ ସେ ଭୁଗବଳର ଅଗ୍ରେ ଢାର ବାକ୍ୟ କହେ ।
ଗବଳ ଶୁଣି ବୋଲେ ଢାରେ ସ୍ୱାମୀ ଅଣି ସମର୍ପିବ ନୋହେ । ୩୩୪
ଣ କହୁଅଛୁ କର ଭୁ ଉପାୟ ଉପାୟରେ କାର୍ଯ୍ୟ ହୋଇ ।
ପାୟ ନ କଲେ ସମର୍ଥ ଲୋକର କାର୍ଯ୍ୟ ସିଦ୍ଧି କ ହୁଅଇ । ୩୩୫
ପାୟରେ ଯେଉଁ କାର୍ଯ୍ୟ ସିଦ୍ଧ ହୋଇ ସେ ପରାର୍ଦ୍ଧମେ ଅସିଦ୍ଧ ।
କ ମାର୍ଗରେ ଶୃଙ୍ଗ ଯାଇ ଶୃଗାଳ ହସ୍ତୀ ମାରେ ବନ ଯୁଦ୍ଧ । ୩୩୬
ଣି ଗୁଗବଳ ପୁଛଇ ଦୂତଙ୍କ ଏକଥା କହ କକ୍ଷୁପେ ।
ଣ କହେ ଏହେ ଶୁଣ ରାଜପୁଏଁ ସେ କଥା କହୁ ସ୍ୱରୂପେ । ୪୩୭
ବ୍ର ଅରଣ୍ୟରେ କର୍ପୂର ଢଳକ ନାମେ ଏକ ହସ୍ତୀ ଥିଲେ ।
ହାକୁ ଦେଖିଣ ସମସ୍ତ ଶୃଗାଳ ମନେ ଏହା ବିଚାରିଲେ । ୪୩୮
ଯେବେ କେଉଁ ଉପାୟରେ ଏ ଗଜକୁ ମାରବା ତେବେ ଅମ୍ଭର ।
ଇଚ୍ଛାରେ ଏହ ମାସ ହେବ ଭୋଜନ ସମସ୍ତେ ବିଚାର କର । ୪୩୯
ହାଁ ଶୁଣି ଏକ ବୃଦ୍ଧ ଜମ୍ବୁକ ଯେ ବହୁତ ପ୍ରତିଜ୍ଞା କଲା ।
ଦ୍ଧି ବଳରେ ମୁ ଏହାକୁ ମାରବ ନିଶ୍ଚୟ ମୋହର ହେଲା । ୪୪୦
ଥୁଅନ୍ତେ ହସ୍ତୀ ସମୀପକୁ ଯାଇ ପ୍ରଣାମ କର କହଲା ।
ସ ଏସ ଦେବ କହନ୍ତେ ସେ ହସ୍ତୀ କାହିଁକି ଯିବ ବୋଇଲା । ୪୪୧
ହା ଶୁଣି ପୁଣି ଜମ୍ବୁକ କହଇ ଶୁଣ ହେ ଗଜଯୂଥପ ।
ବୁ ବନବାସୀ ପଠାଇଛନ୍ତି ତୁମ୍ଭେ ଗଲେ ହେବ ନୃପ । ୪୪୨
ଯେଉଁ ହେତୁରୁ ରାଜ୍ୟ ରାଜା ନ ଥାଇ ରହିବାରେ ନୋହେ ଭଲ ।
ମ୍ଭେ ବନ ରାଜ୍ୟ ଅଭିଷେକ ହେବ ଯିବା ଅସ ବେଗେ ଚାଲ । ୪୪୩
ଣ ଜନ୍ମ ଭୂମି ଅମ୍ବରରେ ଶୁଦ୍ଧ ପ୍ରତାପବନ୍ତ ଧାର୍ମିକ ।
ତିରେ କୁଶଳ ଯେଉଁଜନ ହୁଏ ସେ ଭୂମିରେ ଅଭିଷେକ । ୪୪୪
ଥମରେ ରାଜା ଦ୍ୱିତୀୟରେ ଭାର୍ଯ୍ୟା ତଦନ୍ତରେ ଇଚ୍ଛା ଧନ ।
ଜା ନ ଥିଲେ ରାଜ୍ୟରେ ଲୋକଙ୍କର କ ଭାର୍ଯ୍ୟା କ ହେବ ଧନ । ୪୪୫

ପର୍ଜ୍ଜନ୍ୟ ପରାଏ ପ୍ରାଣିମାନଙ୍କର ଅଶ୍ରୟ ପୃଥିବୀପତି ।
ପର୍ଜ୍ଜନ୍ୟ ଅଭାବେ ଜୀଅନ୍ତି ସମସ୍ତେ ରାଜାଭାବେ ନ ଜୀଅନ୍ତି । ୪୪୬
ନ ଯାଉଁ ଶୁଭକାଳବେଳ ଆପଣ ଅସ ତାହା ଶୁଣି ହସ୍ତୀ ।
ଶୃଗାଳ ପଛରେ ଯାଅନ୍ତେ ପଙ୍କରେ ଲାଗିଣ ପୁଣି କହନ୍ତି । ୪୪୭

ସଖେ ବର୍ତ୍ତମାନ ପଙ୍କରେ ପଡିଲି କହ କି କରିବି ମୁହିଁ ।
ଶୃଗାଳ ହସିଣ କହଇ ମୋ ପୁଚ୍ଛ ଧରିଣ ଉଠ ହେ ଭାଇ । ୪୪୮
ହସ୍ତୀ କହୁଅଛୁ ତୋହର ବଚନେ ଯାହା ମୁ ବିଶ୍ୱାସ କଲି ।
ତାହାର ଫଳ ଏ ଫଳିଲା ମୋହର ନିଶ୍ଚୟ ଅଜି ମୁ ମଲି । ୪୪୯

ଯେବେ ସଜ୍ଜନ ସଙ୍ଗରେ ସଙ୍ଗ ହୋଏ ନିଶ୍ଚେଁ ଜନ ଭଲ ହୋଇ ।
ଅସଜ୍ଜନ ସଙ୍ଗେ ସଙ୍ଗତ ହୋଇଲେ ନିଶ୍ଚେ ଲୋକ ନାଶ ଯାଇ । ୪୫
ଏହି ହେତୁରୁ ମୁ କହିଲି ଏକଥା ଉପାୟ କର ସର୍ବଥା ।
ଉପାୟ କରିଣ ତାକୁ ଯେନ ଅସ ଛାଡ ତୁମ୍ଭେ ମନ ବ୍ୟଥା । ୪୫୧

ଏହା ଶୁଣି ତୁଙ୍ଗବଳ ଚାରୁଦତ୍ତ ନାମେ ବଣିକକୁମର ।
ତାକାଇ ସକଳ କାର୍ଯ୍ୟେ ଅଧିକାର ଦେଇ କଲା ଅନୁଚର । ୪୫୨
ଏକ କାଳେ ସ୍ୱର୍ଣ୍ଣ ଅଲଙ୍କାର ଯେନ କରେ ତାହାକୁ କହିଲା ।
ଅହେ ଚାରୁଦତ୍ତ ମୋର ଏକ ମାସ ଗଉରୀ ବ୍ରତ ହୋଇଲା । ୪୫୩

ସେହି ହେତୁରୁ ଅଜଠାରୁ ଆରମ୍ଭି କୁଳନାରୀ ପ୍ରତିଦିନ ।
ଗୋଟିଏ ଗୋଟିଏ ଅଣ ଗୃହ ଯାଇ ମୁ କରିବି ତା ପୂଜନ । ୪୫୪
ଏଥୁ ଅନ୍ତରେ ଚାରୁଦତ୍ତ କୁଳୀନ ଯୁବତୀଙ୍କି ଅଣି ଦେଇ ।
ସଚ୍ଛେ ଲୁଚି କରି କି କରୁଅଛୁ ଏ ବୁଝିବା ବୋଲି ଦେଖଇ । ୪୫

ସେ ତୁଙ୍ଗବଳ ତାହାକୁ ନ ଛୁଅନ୍ତେ ବସ୍ତ୍ର ଅଭରଣ ଦେଇ ।
ସେହିକ୍ଷଣି ତାକୁ ମେଲାଣି ଦଅଇ ଦେଖି ତା ବିଶ୍ୱାସ ହୋଇ । ୪୫;
ସେ ଚାରୁଦତ୍ତ ଅପଣାର ଭାର୍ଯ୍ୟାକୁ ଅଣି ତାକୁ ସମର୍ପିଲା ।
ସେ ଲାବଣ୍ୟବତୀକି ଦେଖିଣ ଉଠି ଗାଢେ ଆଲିଙ୍ଗନ କଲା । ୪୫୬

ଅନନ୍ତରେ ତାକୁ ପଲଙ୍କେ ବସାଇ ତା ସଙ୍ଗେ ଶୋଇବା ଦେଖି ।
ବୃହତ୍ସ୍ଫିକ ଚିତ୍ରଲିଖିତ ପରାଏ ହୋଇଲା ପରମ ଦୁଃଖୀ । ୪୫୮
ସେହିରୂପେ ତୁମ୍ଭେ ହେବ ଏ ବଚନ ହିରଣ୍ୟକଠାରୁ ଶୁଣି ।
ବଡ଼ ଭୟ କରି ମନ୍ଥର ଚଳିଲା ଜଳାଶୟ ଛାଡ଼ି ପୁଣି । ୪୫୯

କାକ ମୃଗ ହିରଣ୍ୟକ ଏ ସମସ୍ତେ ମନ୍ଥର ପଛେ ଧାଇଁଲେ ।
ସେ କାଳେ ଯେହୁ କେହୁ ବ୍ୟାଧ ଦେଖିଣ ତାକୁ ଧନୁରେ ବାନ୍ଧିଲେ । ୪୬୦
ଏଥୁଅନ୍ତେ ମୃଗ ବାୟସ ମୂଷିକ ବିଷଣ୍ଣ ହୋଇ ଗୋଡ଼ାଇ ।
କୂର୍ମ ସ୍ମରଣ ହିରଣ୍ୟ ମୂଷିକ ବହୁ ବିଳାପ କରଇ । ୪୬୧

ଏକ ଦୁଃଖର ଅନ୍ତକୁ ଯାଇ ନାହିଁ ସମୁଦ୍ର ପାର ପରାଇ ।
ଦ୍ୱିତୀୟ ଦୁଃଖ ଉପସ୍ଥିତ ହୋଇଲା ଛିଦ୍ରେ ଅନର୍ଥ ପଡ଼ଇ । ୪୬୨
ସ୍ୱଭାବରେ ଯେଉଁ ମିତ୍ର ହୁଅଇ ସେ ଭାଗ୍ୟବଳେ ହୋଇ ଯାଇ ।
ସେହି ଅକୃତ୍ରିମ ସୁହୃଦ ଭାବ ଯେ ବିପତ୍ତିରେ ନ ଛାଡ଼ଇ । ୪୬୩

ପୁତ୍ରୁପର ଯେଉଁ ରୂପରେ ବିଶ୍ୱାସ ଅକୃତ୍ରିମ ମିତ୍ରେ ହୋଇ ।
ସେହିରୂପେ ମାତା ପିତା ସୋଦରରେ କେବେ ବିଶ୍ୱାସ ନୁହଇ । ୪୬୪
ପୁଣି ସେ ମୂଷିକ ବିଚାରି କହଇ ଅହୋ ଦୁର୍ଦ୍ଦଶା ଜନର ।
ଜନ୍ମାନ୍ତରର ଶୁଭାଶୁଭ କର୍ମ ଯେ ଫଳଇ ଏ ଜନମର । ୪୬୫

ଶରୀର ଅବଶ୍ୟ ବିନାଶୀ ସମ୍ପଦ ବିପତ୍ତିମାନଙ୍କ ସ୍ଥାନ ।
ସଙ୍ଗମ ବିଜୁଳି ପରାଏ ସମସ୍ତେ ଉତ୍ପନ୍ନ ହେଲେ ଭଞ୍ଜନ । ୪୬୬
ଶୋକ ଶତ୍ରୁ ଭୟରୁ ରକ୍ଷା କରଇ ପ୍ରୀତି ବିଶ୍ୱାସର ସ୍ଥାନ ।
ଯେଉଁ ଜନ ମିତ୍ର ଏ ଦୁଇ ଅକ୍ଷର ରତ୍ନ କରିଛି ନିର୍ମ୍ମାଣ । ୪୬୭

ହିରଣ୍ୟକ ବହୁଁ ବିଳାପ କରିଣ କାକ ମୃଗକୁ କହଇ ।
ବ୍ୟାଧ ଯେବେ ଏ ବନରୁ ବାହାରିବ ତେବେ ମିତ୍ରକୁ ନ ପାଇ । ୪୬୮
ବନରୁ ବାହାର ହୋଇବା ମାତ୍ରକେ ମନ୍ଥର ରକ୍ଷା ଯତନ ।
କର କେଉଁରୂପେ ସେ ଦୁହେଁ କହିଲେ ମୂଷା କହଇ ବଚନ । ୪୬୯

ଚିତ୍ରାଙ୍ଗ ଛଳ ସମୀପକୁ ଯାଇ ସେଠାରେ ମଲାପ୍ରାୟ ପଡ଼ୁ ।
କାକ ଯାଇକର ତା ଉପରେ ବସି ଥଣ୍ଟରେ ତା ଦେହ ଫୋଡ଼ୁ । ୪୭
ତା ଦେଖି ନିଷ୍ଠୁର ମନ୍ଥରକୁ ଛାଡ଼ି ମୃଗଠାକୁ ଯିବ ବ୍ୟାଧ ।
ତହିଁ ଉତ୍ତାରୁ ମୁଁ ପାଶକୁ କାଟିବ କାର୍ଯ୍ୟ ହୋଇ ଯିବ ସିଦ୍ଧ । ୪୭୧

ମୃଗ କାକ ଦୁହେଁ ସେରୂପ କରନ୍ତେ ବ୍ୟାଧ ପାଣି ପିଇ କରି ।
ତରୁତଳେ ବସି ଦେଖିଣ ମୃଗକୁ ଦଉଡ଼େ ଧେନ କଟୁରି । ୪୭୨
ବ୍ୟାଧ ମୃଗର ସମୀପକୁ ଯାଅନ୍ତେ ମୂଷିକ ପାଶ କାଟିଲା ।
ସେ କ୍ଷଣେ ମନ୍ଥର ଜଳକୁ ପଳାଇ କାକ ମୃଗ ପଳାଇଲା । ୪୭୩

ବ୍ୟାଧ ଲେଉଟି ତରୁତଳେ କୂର୍ମକୁ ନ ଦେଖି ବୋଲେ ବଚନ ।
ଯେ ହେବା କଥାକୁ ଛାଡ଼ି ନୋହିବାରେ ପ୍ରବର୍ତ୍ତେ ତା ଦୁହେଁ ହାନ । ୪୭
ଏମନ୍ତ କହି ସେ ବ୍ୟାଧ କଟକରେ ଯାଇ ପ୍ରବେଶ ହୋଇଲେ ।
ସେମାନେ ବିପଦରୁ ମୁକ୍ତ ହୋଇଣ ସ୍ୱସ୍ଥାନେ ସୁଖେ ରହିଲେ । ୪୭

ରାଜପୁତ୍ରମାନେ କହିଲେ ଏମନ୍ତ ହୋଇଲୁଁ ସୁଖ ସମ୍ପନ୍ନ ।
ଅମ୍ଭମାନଙ୍କର ଏ କଥା ଶୁଣି ଯେ ହୋଇଲା ଆନନ୍ଦ ମନ । ୪୭୬
ବିଷ୍ଣୁଶର୍ମା ନାମେ ବ୍ରାହ୍ମଣ କହିଲେ ସିଦ୍ଧ ହେଉ ମନୋରଥ ।
ତୁମ୍ଭମାନଙ୍କର କଲ୍ୟାଣ କରଣେ ଚନ୍ଦ୍ରଚୂଡ଼ ସମରଥ । ୪୭୭

ଇତି ଶ୍ରୀ ହିତୋପଦେଶେ ଭାଷାରେ ମିତ୍ରଲାଭ କଥନେ

ପ୍ରଥମ କଥା ସଂଗ୍ରହଃ ।

## ସୁହୃଦଭେଦ ।

ଆଷାଢ଼ଶୁକ୍ଳ ରାଗ ।

ପଚାରନ୍ତି ପୁଣି ରାଜକୁମର । ମିତ୍ରଲାଭ କଥା ଶୁଣି ଆମ୍ଭର ।
ଶୁଣିବାକୁ ଇଚ୍ଛା ସୁହୃଦଭେଦ । କହ କହ ତୁମ୍ଭେ ବଚନ ଭେଦ ।
ବିଷ୍ଣୁଶର୍ମା କହି । ଶୁଣିମା ହେଉ କହୁଅଛୁ ମୁହିଁ । ୧ ।
ସିଂହ ବୃଷଭ ଦୁହିଁଙ୍କର ବନେ । ପୀରତି ବଢ଼ିଲା ସେ ଦିନେ ଦିନେ ।
ସେ ପୀରତି ଲୋଭୀ ଜମ୍ବୁକ ଖଳ । କପଟ କରଣ କଲା ବିଫଳ ।
ରାଜସୁତ ଶୁଣି । ପଚାରନ୍ତି କହ ଏକଥା ପୁଣି । ୨ ।
ବିଷ୍ଣୁଶର୍ମା କହେ ଶୁଣ କୁମର । ଦକ୍ଷିଣେ ସୁବର୍ଣ୍ଣବତୀ ନଗର ।
ତହିଁରେ ବର୍ଦ୍ଧମାନ ମହାଜନ । ରହିଅଛି ତାର ବହୁତ ଧନ ।
ଦେଖି ଅନ୍ୟ ଧନ । ହେଲା ଧନବୃଦ୍ଧି କରଣେ ମନ । ୩ ।
ତଳକୁ ଚାହିଁଲେ ଉପର ଲୋକ । ବେଳକୁ ବେଳକୁ ଧନ ଅଧିକ ।
ଚାହିଁଲେ ଉପରକୁ ତଳ ହୀନ । ସମସ୍ତେ ହୋଇଛନ୍ତି ଅତି ଦୀନ ।
ଏକଥାକୁ ଚାହିଁ । ଧନ ବଢ଼ାଇବାରେ ମତି ଦେଇ । ୪ ।
ଯାହାର ବହୁତ ଧନ ହୁଅଇ । ବ୍ରହ୍ମହତ୍ୟା କଲେ ସେ ପୂଜ୍ୟ ହୋଇ ।
ଧନ ହୀନ ହୋଏ ଯେବଣ ନର । ଚନ୍ଦ୍ରକୁଳ ବଂଶ ହେଲେ ଅସାର ।
କେ କହିବ ମୁହିଁ । ଧନ ହୀନ ହେଲେ କିଛି ନୁହଇ । ୫ ।
ଯେ ଉଦ୍ୟମେ ହୀନ ଅଳସ ଜନ । ଦୈବ ପରବଶ ସାହସ ହୀନ ।
ବୃଦ୍ଧ ପତିକି ଯୁବତୀ ଯେସନ । ଲକ୍ଷ୍ମୀ ତାଙ୍କୁ ନ କରେ ଆଲିଙ୍ଗନ ।
ଏହି ବାକ୍ୟ ସତ । ଲକ୍ଷ୍ମୀହୀନ ମନୁଷ୍ୟର ଏମନ୍ତ । ୬ ।
ଯେଉଁ ଜନ ଅଳସୁଆ ହୁଅଇ । ନିତ୍ୟରେ ନାହିଁ ଲମ୍ପଟେ ରହଇ ।
ରାଗୀ ଯେ ଜନ୍ମଭୂମି ଅନୁରାଗୀ । ଅଳ୍ପ ସନ୍ତୋଷେ ହୁଅଇ ସରାଗୀ ।
ତାର ନୋହେ ଧନ । ଏ ଷଟ କରନ୍ତି ଧନ ଘାତନ । ୭ ।

ଅଳ୍ପ ସମ୍ପତ୍ତିରେ ଯେବଣ ଜନ । ସବୁ ହେଲା ବୋଲି ମଣଇ ମନ
ତାହାର କୃତକାର୍ଯ୍ୟ ହୋଇକରି । କେବେ ଧନ ନ ବଢ଼ଇ ତାହାର
ଏମନ୍ତ ଜାଣଇ । ବିଧି ନ୍ତ ପରପାଇଁ ଦଉଛଇ । ୮ ।
ଉତ୍ସାହ ହୀନ ଆନନ୍ଦରେ ହୀନ । ଦୁର୍ବଳ ଅସୁନ୍ଦର ଅପଘନ ।
ଏହାଙ୍କୁ କାହିଁ ଜନ୍ମ ନ କରିବ । ଏମନ୍ତ ଯେଉଁ ସୁତ ହୋଇଥିବ ।
ତାହାର କେବଳ । ଗର୍ଭ କ୍ଳେଶ ହୀନ ଦୁଃଖହିଁ ସାର । ୯ ।
ଅଲବ୍ଧ ଧନକୁ ଇଚ୍ଛା କରିବ । ଲବ୍ଧକୁ ତାତପର୍ଯ୍ୟରେ ରଖିବ ।
ନ୍ୟାୟରେ ତାହାଙ୍କୁ ବଢ଼ାଇ କରି । ସତ ପାତ୍ରରେ ଦେବ ଦାନ କ
ଛଡ଼ି ରାଜବୃତ୍ତ । ଏହା କଲେ ଲୋକ ହୁଅଇ ଖ୍ୟାତ । ୧୦ ।
ଜନର ଧନ ଯେବେ ନ ବଢ଼ଇ । କାଳେ ଅଞ୍ଜନ ପ୍ରାୟ କ୍ଷୟ ହୋ
ଯେଉଁ ଧନେ ପରୋପକାର ନୋହି । ତହିଁରୁ କିଛି ପ୍ରୟୋଜନ ନାହିଁ
ଏମନ୍ତ ବିଚାରି । ଧନ ବଢ଼ାଇ ଦେବ ଦାନ କରି । ୧୧ ।
ଅଞ୍ଜନର କ୍ଷୟ ନୟନେ ଦେଖି । ଉଇହୁଙ୍କାର ବର୍ଦ୍ଧନ ନିରେଖି ଏ
ବେଦ ପାଠ ଦାନ ଏ କର୍ମମାନ । କରି କରି ନେବ ଦିବସମାନ ।
ତା କେତେ କହିବା । ନିତ୍ୟେ ଦାନ ଧର୍ମ କର୍ମ କରିବା । ୧୨
ଯିମନ୍ତେ ଜଳବିନ୍ଦୁ ପଡ଼ୁଥାଇ । ଯେରୂପ ଘଟର ଭିତରେ ପୂରି ।
ସେରୂପେ ସର୍ବ ବିଦ୍ୟାମାନଙ୍କର । କ୍ରମେ ବୃଦ୍ଧି ହୋଇ ଧର୍ମ ଧନର
ଏମନ୍ତ ବିଚାରି । ଶକଟେ ସମସ୍ତ ଦ୍ରବ୍ୟକୁ ଭରି । ୧୩ ।
ସଂଜୀବକ ନନ୍ଦକ ଦୁଇ ଅଣି । ଯୋଡ଼ି ଶଗଡ଼େ ହୋଇଲା ମେଳଣି
ବାଣିଜ୍ୟ ନିମିତ୍ତରେ ବର୍ଦ୍ଧମାନ । କାଶ୍ମୀର ଦେଶକୁ କଲା ଗମନ ।
ଯେ ଅତି ସମର୍ଥ । ତାହାର ଅଛି କ ନୁହଇ ଅର୍ଥ । ୧୪ ।
ସମର୍ଥମାନଙ୍କର କେଉଁ ଭାର । ବ୍ୟବସାୟୀ ଲୋକଙ୍କର କି ଦୂର ।
କି ବିଦେଶ ବିଦ୍ୟାବନ୍ତ ଲୋକର । ପ୍ରିୟବାଦୀ ଲୋକଙ୍କର କି ପର
ଗଲେ ବନେ ମାତ । ସଂଜୀବକ ଜାନୁ ଭଗରେ ପଡ଼ି । ୧୫ ।

ତା ଦେଖି ବଣିକ୍ଷାବୁ ଚିନ୍ତା କରେ । ବ୍ୟବସାୟୁ ଯିନା ମନୁଷ୍ୟ କରେ ।
ଯେଉଁ କାର୍ଯ୍ୟ ବଧି ମନରେ ଥାଇ । ସେହି କାର୍ଯ୍ୟ ନିଶ୍ଚଳରେ ରହଇ ।
ଏଥିକ ବସ୍ତୁର । ନ କର ପୁଣି କରବ ବେପାର । ୧୬ ।
ସର୍ବ କର୍ମମାନଙ୍କର ବ୍ୟାଘାତ । କରଇ ସର୍ବଦା ବିଷାଦ ଚିତ୍ତ ।
ଏହି ହେତୁରୁ ବିଷାଦ ଛାଡ଼ିବ । କାର୍ଯ୍ୟ ସିଦ୍ଧିରେ ଉଦ୍ୟମ କରିବ ।
ଏମନ୍ତ କହିଣ । ସଂଜୀବକକୁ ସେଠାରେ ରଖିଲ । ୧୭ ।
ସେବକମାନଙ୍କୁ ସେ ଧନ ଦେଇ । କହେ ଏଠାରେ କିଛି ଦିନ ରହି ।
ଧନ ଲଭଇ ସଂଜୀବକ ମୋର । ଭଲ କରି ଯିବ ଗୋଡ଼କୁ ତାର ।
ପଛତକୁ ଯିବ । ତୁମ୍ଭେ ଏ କଥା ହେଲା ନ କରିବ । ୧୮ ।
ସେ ଭୃତ୍ୟମାନେ ରହି କିଛି ଦିନ । ସଂଜୀବକ ଛାଡ଼ି କଲେ ଗମନ ।
ସଂଜୀବକ ମଲା ବୋଲି କହିଲେ । ତାହାକୁ ପୋଡ଼ି ଅଇଲୁଁ ବୋଲିଲେ ।
ବର୍ଦ୍ଧମାନ ଶୁଣି । ବହୁ ଦୁଃଖ କରି ଚଳିଲା ପୁଣି । ୧୯ ।
ସଂଜୀବକ କଷ୍ଟ ପୁଣି କଷ୍ଟରେ । ଏକ ଗୋଡ଼େ ଉଠି ବନ ଭିତରେ ।
କିଛି ଦିନ ଯତ୍ନେ ଆହାର ଖାଇ । ପୁଷ୍ଟାଙ୍ଗ ହୋଇ ବୁଲଣ ବୋବାଇ ।
ଏ ଶ୍ଳୋକେ ବର୍ତ୍ତେ । ଆୟୁଷ ଥିଲେ ମିଳଇ ଜୀବନ । ୨୦ ।
ସମୁଦ୍ର ଭିତରେ ଯେ ବୁଡ଼ିଥାଇ । କିଅବା ପର୍ବତରୁ ପଡ଼ଇ ।
ତକ୍ଷକ ସର୍ପ ଅବା ଖାଇଥାଇ । ଆୟୁଷ ଥିଲେ ଜନ୍ତୁ ନ ମରଇ ।
ସଂସାରରେ ଅଛି । ଏଥିକି ତୁମ୍ଭେ ନ ବିଚାର କିଛି । ୨୧ ।
ସେ ବନେ ଅଛି ସିଂହ ପିଙ୍ଗଳକ । ଭୁଜ ବଳରେ ହୋଇଛି ପାଳକ ।
ସେ ଏକ କାଳେ ତୃଷାକୁଳ ହୋଇ । ଯମୁନା ନଦୀ ତୀରକୁ ଗମଇ ।
ପିଇବାକୁ ଜଳ । ମହା ତୃଷାରେ ହୋଇଣ ବିକଳ । ୨୨ ।
ମୃଗମାନେ କି କରନ୍ତି ରାଜା । କେହି ତାକୁ କି କରନ୍ତି ପୂଜା ।
ତାହାର କର୍ମବଳେ ଅର୍ଜିତ । ହୋଇଛି ବନରେ ସିଂହ ରାଜତ୍ୱ ।
ସବୁଠାରେ ମୂଳ । ସର୍ବ ଜନଙ୍କର ହୁଅଇ ବଳ । ୨୩ ।

ସେଠାରେ ସଂଜୀବକ ନାଦ ଶୁଣି । ବୋଇଲା କବ ଏ ଅପୂର୍ବ ବାଣୀ
ଜଳ ନ ପିଇ ସଚକିତ ହୋଇ । ଆସି ଘରକୁ ସ୍ୱସ୍ଥାନେ ବସଇ ।
ବଡ଼ ଚିନ୍ତା କଲା । କାହା ଶବ୍ଦ ବୋଲି ଭୁନ ହୋଇଲା । ୧୪
ତଦନ୍ତେ ଦମନକ କରଟକ । ଦୁଇଜଣ ଥିଲେ ତାର ନିକଟ ।
ସେ ମନ୍ତ୍ରୀ ପୁତ୍ରେ ସିଂହକୁ ଦେଖିଲେ । ଦମନକ କରଟକକୁ ବୋଲେ
କହିବ କଥାଏ । ବସ୍ତୁର କର କହିବ ଉପାୟେ । ୧୫ ।
କବ ଅମ୍ଭ ସ୍ୱାମୀ ହେ କରଟକ । ଜଳ ନ ପିଇ ଅଇଲା ଉଛୁଟ ।
ତୃଷାର୍ଥୀ ହୋଇ ଯାଇଣ ଅଇଲା । କପାଇଁ ଅପଣା ଘରେ ରହିଲା
କରଟକ କହି । ତାର ବିଷୟେ ଅମ୍ଭର କ ହୋଇ । ୧୬ ।
ଯେଣୁ ଅମ୍ଭଠାରେ ସିଂହ ରାଜନ । ଚିରକାଳୁ କରନ୍ତୁ ଅବଜ୍ଞାନ ।
ବହୁତ ଦୁଃଖ ଅନୁଭବ ହେଲା । ତାର ଦୁଃଖରେ ଅମ୍ଭର କ ଗଲା
ସେବକ ଜନର । କେହି ନ ଜାଣଇ ଦୁଃଖ ଅପାର । ୧୭ ।
ସେବକ ଜନ ଯେ ଧନ ଇଚ୍ଛାରେ । ଯାହା କରଇ କେ କରେ ସଂସାରେ
ଅଦ୍ଭୁ ଶରୀରେ ସର୍ବ ଜନଙ୍କର । ଯେଉଁ ପ୍ରଭୁତ୍ୱ ସେ ନାହିଁ ତାଙ୍କର ।
ସେ ସେବକମାନେ । ଅପଣା ଦେହକୁ ହାରନ୍ତି ଧନେ । ୧୮ ।
ଯେତେ କ୍ଳେଶ ଶୀତ ବାତ ତପରେ । ତାକୁ ସହନ୍ତି ପରାଶ୍ରିତ ନରେ ।
ଏଥିରୁ ଦୁଃଖ ଭାଗେ ତପସ୍ୟାରେ । ତାକୁ କର ସୁଖ ପାଆନ୍ତି ନରେ ।
ମୁ କହିବ କେତେ । ସେବକମାନେ ଦୁଃଖ ପାନ୍ତି ଯେତେ । ୧୯ ।
ଜନ୍ମ ହେବାର ସଫଳ ଏତକ । ଯେ ନ ଯାଇ ପରାଧୀନ ବୃତ୍ତିକ ।
ଯେବେ ପରାଧୀନ ଜୀବନ ହୋଏ । ସେ ଜୀଇଅଛୁ ଅନ୍ୟ ମଲା କଏ ।
ଏହି ବିଷୟରେ । ବହୁତ ଅଛୁ କହିବା ତୋହରେ । ୨୦ ।
ଧନପାଇଁ ଯେ ଅସଇ ଯାଚକ । ତାହାକୁ ଏରୂପେ ବୋଲେ ଧନିକ ।
କେତେବେଳେ କହେ ଯାଅ ହେ ଅସ । କେତେବେଳେ ବୋଲେ ଉ[ହେ ବସ ।
କେତେବେଳେ କହ । କେତେବେଳେ ବୋଲଇ ଭୁନ ହୁଅ । ୨୧

ପୁରୁଷମାନେ ସେ ଧନ ଲୋଭରେ । ବେଶ୍ୟାନାରୀ ପ୍ରାପ୍ତି ଅର୍ଥ ଇଚ୍ଛାରେ ।
ଭୂଷିତ କରି ଅପଣା ଦେହକୁ । ନେଇ ସମର୍ପନ୍ତି ପର ଲୋକଙ୍କୁ ।
ସେହିରୂପେ ସେବକ । ଧନପାଇଁ ବଳେ ଅମୃଦ୍ଧବେକ । ୩୨ ।
ଯେଉଁ ବୃକ୍ଷ ସ୍ୱଭାବରେ ଚଞ୍ଚଳ । ଅଶୁଦ୍ଧ ପଦାର୍ଥେ ହୋଏ ନିଶ୍ଚଳ ।
ସ୍ୱାମୀ ଯେବେ ସେହି ବୃକ୍ଷରେ ରହି । ତାହାକୁ ସେବକ ବନ୍ଧୁ ମଣଇ ।
କି କହିବ ବହୁ । କିଏ ଅବା ସେ ଇଚ୍ଛ୍ୟ ଦୁଃଖ ସହୁ । ୩୩ ।
ଉନ୍ନତ ହେବାପାଇଁ ନମ୍ର ହୋଇ । ଜୀବନ ପାଇଁ ପ୍ରାଣକୁ ଛାଡଇ ।
ସୁଖପାଇଁ ପାଏ ଦୁଃଖ ବହୁତ । ମୂଢ଼ କେ ସେବକ ବିନା କହିତ ।
ମେଣ୍ଢା ଯୁଦ୍ଧ ପ୍ରାୟେ । ଆଗେ ମାରିବାକୁ ପଛକୁ ଯାଏ । ୩୪ ।
ଦମନକ କରଟକକୁ କହେ । ମିତ୍ର ଏ ଉଚିତ ସର୍ବଥା ନୋହେ ।
ରାଜ ସେବା ନାହିଁ ଯେଉଁ ଜନର । କାହୁଁ ବାଜି ଗଜ ବାହନ ତାର ।
ଶ୍ୱେତ ଛତ୍ର ଧ୍ୱଜ । କାହୁଁ ହେବ ବାଦ୍ୟ ନାଗରା ହାତୀ । ୩୫ ।
କରଟକ କହେ ହେ ଦମନକ । କାହିଁକି ଈଶ୍ୱର ନ ଭଜେ ଲୋକ ।
ସେ ତୁଷ୍ଟ ହେଲେ ଯେ ଅଳ୍ପ କାଳରେ । ଜନ ମନୋରଥ ପୂରଣ କରେ ।
ଲୋକ ବହିର୍ମୁଖ । ସାକ୍ଷାତେ କହୁଅଛି ମୁହିଁ ଦେଖ । ୩୬ ।
ତ୍ରିଜଗତ ନାଥ ପରମେଶ୍ୱର । ହୃଦେ ଅଛନ୍ତି ସମସ୍ତ ଜନର ।
ବୈକୁଣ୍ଠ ପଦ ଦେବାକୁ ସମର୍ଥ । ସେ ଦାତା ଥାଅନ୍ତେ କିପାଇଁ ବ୍ୟର୍ଥ ।
ଧନକୁ ଭଜଇ । ଲୋକ ମୂର୍ଖପଣ କୁହା ନ ଯାଇ । ୩୭ ।
ଯେ ପ୍ରଧାନ ମନ୍ତ୍ରୀ ସେହି ବର୍ଗରୁ । ଯେ ଅଦ୍ୟାପାର ତହିଁ କପିଁ ଝୁରୁ ।
ଯାହାର ଯେଉଁ କରଣୀୟ ନୋହି । ତାହାକୁ ସର୍ବଥା ସେ ନ କରଇ ।
କଲେ ନାଶ ଯାଇ । ଋଷିମାନେ ରାଜନୀତିରେ କହି । ୩୮ ।
ଯେଉଁ ନର ଅବ୍ୟାପାରେ ବ୍ୟାପାର । କରିବାକୁ ଇଚ୍ଛା କରେ ତାହାର ।
ଯେଉଁ କଲା ଉପାଡଣା ବାନର । ସେହିକ୍ଷଣେ ଗଲା ଶମନପୁର ।
ସେହିରୂପେ ହୋଇ । ମରଣ ଏଥିରେ ସନ୍ଦେହ ନାହିଁ । ୩୯ ।

ଦମନକ କହେ କହ ଏ କଥା । କରଟକ ଶୁଣ ମୋ ମନ ବ୍ୟଥା ।
ଦମନକକୁ କରଟକ କହେ । ଶୁଣିମା ହେଉ ମନ ଦେଇ ବହେ ।
ସେ ମଗଧ ଦେଶ । ଅଛୁ ଧର୍ମାରଣ୍ୟ ବୋଲି ପ୍ରଦେଶ । ୪୦ ।

ତା ସମୀପେ ଶୁଭଦତ୍ତ କାୟସ୍ଥ । ସଭା ମଣ୍ଡପେ କଲା ମନୋରଥ ।
ତାହା ନିର୍ମାଣକୁ ଅଣି ବଢ଼ାଇ । କରତବାକୁ ହାତେ କାଠ ଦେଇ ।
ଚିରିଲା ବଢ଼ାଇ । ପଟା ମଧ୍ୟରେ କଲାକୁ ପୂରାଇ । ୪୧ ।

ଏହି ସମୟରେ ଦଳେ ବାନର । କ୍ରୀଡ଼ା ନିମନ୍ତେ ପ୍ରବେଶ ସେଠାର ।
ତହିଁ ମଧ୍ୟେ ଏକ ବାନର ଥିଲା । ସେହି କଲାକୁ ଧରଣ ବସିଲା ।
ତାର ମୁଷ୍କ ଦୁଇ । ଚିରା କାଠ ମଧ୍ୟେ ପ୍ରବେଶ ହୋଇ । ୪୨ ।

ଏଥୁଅନ୍ତେ ସେ ସ୍ୱଭାବେ ଚଞ୍ଚଳ । ଯତ୍ନରେ କଲାକୁ କଲା ବାହାର ।
କାଠ ମଧ୍ୟରେ ମୁଷ୍କଦ୍ୱୟ ଥିଲା । ଦୁଇ ପଟା ବାଜ ଚୂର୍ଣ୍ଣ ହୋଇଲା ।
ହୋଇ ଛଟପଟି । ସେହିକ୍ଷଣେ ମଲା ବାନର ଗୋଟି । ୪୩ ।

ଏହି ହେତୁରୁ ମୁ ତତେ କହିଲି । ଆମ୍ଭ ବ୍ୟାପାର ସେ ନୋହେ ବୋଲି ।
ଦମନକ କହେ କରଟକକ । ସ୍ୱାମୀ କାର୍ଯ୍ୟ ବତ୍ସରକ ସେବକ ।
ଅବଶ୍ୟ ହୋଇବ । ଏକଥା କଣ ଅଛୁ ଯେ ଦଇବ । ୪୪ ।

କରଟକକ କହେ ଦମନକ । ସବ ଅଧିକାରେ ଯେ ନିଯୋଜକ ।
ସେହି ପ୍ରଧାନ ମନ୍ତ୍ରୀ କରୁ ତାହା । ତହିଁରେ ଅମ୍ଭର କି ଅଛୁ ସ୍ପୃହା ।
ଯେଣୁ ସେ ସେବକ । ତାର ଅଧିକାରେ ନୁହ ଚଳିକ । ୪୫ ।
ଯେଉଁ ସେବକ ପର ଅଧିକାରେ । କରେ ଉଦ୍ୟମ ସ୍ୱାମୀ ହିତେଛାରେ ।
ଶବଦ କଲା ଗର୍ଦ୍ଦଭ ପରାଏ । ମରଇ ସେ ସେହିକ୍ଷଣେ ସେଠାଏ ।
ଦମନକ କହି । କଲ୍ପେ ଏକଥା କହ ହେ ଭାଇ । ୪୬ ।
କରଟକ କହେ ପୂର୍ବକାଳରେ । ରଜକ ଥିଲା ସେ ବାରାଣସୀରେ ।
କର୍ପୂର ପଟ ସେ ଏକ ଦିନରେ । ଶୋଇଥିଲା ନବକାନ୍ତା ସଙ୍ଗରେ ।
ଏଥୁ ଅନନ୍ତରେ । ଚୋର ପ୍ରବେଶ ହୋଇଲା ତା ଘରେ । ୪୭ ।

ରଇ ଅଗଣାରେ ଗର୍ଦ୍ଦଭ ଥିଲା । କୁକ୍କୁର ତା ପାଖେ ବନ୍ଧନ ହେଲା ।
ଧ କୁକ୍କୁରକୁ କହଇ ବାଣୀ । କରେ ସ୍ୱାମୀ କାର୍ଯ୍ୟ ଛଡ଼ୁ ତୁ ପୁଣି ।
ତୁ ଶବଦ କର । ଶବଦରେ ସ୍ୱାମୀ ଉଠୁ ସତ୍ୱର । ୪୮ ।

କୁକ୍କୁର କହେ ଶୁଣ ଅରେ ଶଠ । ମୋର ନିଯୋଗରେ ତୋର କି ଘଟ ।
ଘଳୁଁ ଏ ଗୃହ ରକ୍ଷା କରଇ । କିଛି ତହୁଁ ତତେ ଗୋଚର ଅଛି ।
ମୋର ଉପକାର । ନ ଘେନ କରଇ ଏ ମହାଦର । ୪୯ ।

ାଳିଦାକୁ ମୋତେ ନ ଦେଇଅଛି । ତେଣୁ ଏହା କାର୍ଯ୍ୟ ନାଶ କରୁଛି ।
ଘଣୁ ସ୍ୱାମୀମାନେ ସେବକଠାରେ । କାର୍ଯ୍ୟ ନ ଦେଖି ନୁହନ୍ତି ସାଦରେ ।
ସେ ଗର୍ଦ୍ଦଭ କହି । ଶୁଣରେ ବାଉଳ ଏମନ୍ତ ନୋହି । ୫୦ ।

ାର୍ଯ୍ୟକାଳେ ମାଗେ ଯେ ଭୃତ୍ୟ ମିଶ । କୁତ୍ସିତ ମିଶ ସେ କୁତ୍ସିତ ଭୃତ୍ୟ
କୁକ୍କୁର କହଇ ଶୁଣ ଶଠରେ । ଯେ ଭୃତ୍ୟକୁ ଦେଇ କାର୍ଯ୍ୟକାଳରେ
ସେ ସ୍ୱାମୀ ନୁହଇ । କୁତ୍ସିତ ପ୍ରଭୁ ବୋଲି ତାକୁ କହି । ୫୧ ।

ସର୍ବଂକମାନଙ୍କର ବରତନେ । ସ୍ୱାମୀ ସେବାରେ ଧର୍ମିଇ ସେବନେ ।
ଏମାନଙ୍କ ଉତ୍ପତ୍ତି କର୍ମରେ । ପ୍ରତିକୂଳ ନୁହନ୍ତି କେହି ନରେ ।
ଯେବେ ସେ ହୁଅନ୍ତି । ଇହ ପରଲୋକେ ନିନ୍ଦା ପାଅନ୍ତି । ୫୨ ।

ଣି ଗର୍ଦ୍ଦଭ କହେ ସକୋପରେ । ସ୍ୱାମୀ କାର୍ଯ୍ୟ ଛଡ଼ୁଛୁ ପାପ ଅରେ ।
ହିଉ ସ୍ୱାମୀ ଯେଉଁରୂପରେ ଭଲ । ହେବ ଟିଅଁ ଇଦ ସେ କର୍ମ ମୂଳ ।
ନିଷ୍କପଟ ହୋଇ । ସ୍ୱାମୀ କାର୍ଯ୍ୟ କଲେ ସ୍ୱର୍ଗକୁ ଯାଇ । ୫୩ ।

ଷ୍ଠରେ ସୂର୍ଯ୍ୟଙ୍କୁ ସେବା କରିବ । ହୁତାଶନକୁ ଉଦରେ ଭଜିବ ।
ମୀଙ୍କି ସର୍ବ ଭାବରେ କଣିବ । ଅକପଟେ ପରଲୋକ ଜଣିବ ।
ଏମନ୍ତ କହିଲା । ସେ ମହାଚିତ୍କାର ଶବଦ କଲା । ୫୪ ।

ର୍ଦ୍ଦଭ ଶବଦ ଶୁଣି ରଜକ । କହେ ଶଠ ମୋର ନିଦ୍ରାଭଞ୍ଜକ ।
ମନ୍ତ ବୋଲି କୋପରେ ଉଠିଲା । ଦଣ୍ଡ ଦଣ୍ଡ ତା ଉପରେ ପିଟିଲା ।
ଏଣୁ ମୁ କହୁଛି । ପର ଅଧିକାରେ ନ କହ କିଛି । ୫୫ ।

ତେଣୁ ପଶୁମାନଙ୍କ ଅନ୍ୱେଷଣ । ସ୍ୱାମୀ ଦେଇଛୁ ଅମ୍ଭ ନଯୋଜନ ।
କ କାର୍ଯ୍ୟ ଅନ୍ୟ ଚିନ୍ତାରେ ଆମ୍ଭର । ଯେଣୁ ଅଛୁ ବହୁ ମାଂସ ଆହାର
କୋପେ ଦମନକ । ବୋଲେ ତୁ ଆହାର ମାତ୍ରେ ସେବକ । ୫୬
ଏକଥା କହିଲୁ ଯେ ଅନୁଚିତ । କେ ପେଟ ନ ପୋଷଇ ତୁ କହତ
ସୁହୃଦମାନଙ୍କର ଉପକାର । ଶତ୍ରୁମାନଙ୍କର ଯେ ଅପକାର ।
ଏହା କରିବାକୁ । ଲୋକ ଆଶ୍ରୟ କରଇ ନୃପକୁ । ୫୭ ।
ଯେ ଜୀଇଥିଲେ ସମସ୍ତେ ଜୀଅନ୍ତି । ସେହି ଜୀଇ ଥାଉ ସର୍ବେ ବୋଲନ୍ତି
କାକ ହେଲେହେଁ ଆପଣା ଥଣ୍ଟରେ । ନେଇ ଯେ ଆହାର ଉଦରେ ଭରେ
ଜୀଇ କି କରିବ । ଯେ କି ପର ଉପକାର କରିବ । ୫୮ ।
ଦେଖ ପାଞ୍ଚ କାହାଣରେ ସେ ଦକ । କାହାଣ କରେ କେହି କେହି ଲୋ
ଲକ୍ଷକରେ କେହି ହୁଅଇ ଦାସ । ଲକ୍ଷକରେ କେହି ନ ଆସେ ପାଶ ।
ସେବକ ହେବାର । ଅଧଣେ କନା ହୁଅଇ ତାହାର । ୫୯ ।
ତେଣୁ ତୋହର ଚିତ୍ତ ଅନୁସର । କହିଲ ଏହି କଥାକୁ ବିଚାର ।
ସତ୍ପୁରୁଷ ଯେ ତା ବିପତ୍ତି ହେଲେ । ନୀଚ ବୃତ୍ତିକି କେବେହେଁ ନ କରେ
ସହିଲୁ ଗ୍ରହିଣ । କରଇ ସେ ନାନାବିଧ ଭୋଜନ । ୬୦ ।
କୁକ୍କୁର ମଳିନ ନିର୍ମାଂସ ଅସ୍ଥି । ପାଇ ତାର ହୁଏ ମହା ତୃପତି ।
ସିଂହ ଯେ ଜମ୍ବୁକ ନିକଟେ ଥିଲେ । ତାକୁ ଛାଡି ଭ୍ରମି ଗଜକୁ ମାରେ
ଏଣୁକରି ଜନ । ସତ୍ତ୍ୱ ଅନୁରୂପେ ବାଞ୍ଛେ ଭୋଜନ । ୬୧ ।
ସେବ୍ୟ ସେବକରେ ଦେଖ ଅନ୍ତର । ଲାଙ୍ଗୁଡ଼ ଚାଳଇ ତଳେ କୁକ୍କୁର ।
ଚରଣେ ପଡି ଉଦର ଦେଖାଇ । ପିଣ୍ଡ ଦେଲା ଲୋକର ମୁଖ ଚାହିଁ ।
ମହାରାଜା ଥାଇ । ନ ଖାଇ ଧୀର କରଣ ଚାହିଁଇ । ୬୨ ।
ଯେତେହେଁ କଲେ ତାକୁ ଖଣ୍ଡ ଖଣ୍ଡ । ନ ଛାଡେ ମାଧୁର୍ଯ୍ୟ ସେ ଇକ୍ଷୁଦଣ୍ଡ
ଯେତେ ପୋଡିଲେ ନ ଛାଡ଼ଇ ବର୍ଣ୍ଣ । ଆପଣା ବର୍ଣ୍ଣକୁ ଯେସନେ କାଞ୍ଚନ ।
ସେ ଯେତେ ଘୋରିଲେ । ଆପଣା ଗନ୍ଧକୁ ନ ଛାଡେ ଚନ୍ଦନେ । ୬୩ ।

ଉତ୍ତମ ଲୋକର ଏରୂପେ ଗତି । ପ୍ରାଣାନ୍ତ ହେଲେ ନ ଛାଡେ ପ୍ରକୃତି
ଶ ଚୁରୁ ଛଡ଼ୀ ଦୁଃଖୀ ବାନ୍ଧବ । ଏତେଠାରେ ନୋହେ ଦସ୍ତୁର ଲବ
ଯେ ନିଜ୍ୟ ଖାବତ । ବଳି ଖାଇ ଜୀଏ କାକ ବହୁତ । ୬୪ ।

ଟକ କହେ ଦମନକ । ଅମ୍ଭେ ଦୁହେଁତ ଅପ୍ରଧାନ ଲୋକ ।
ଏ ବସ୍ତୁରେ କଦା ଅଛୁ । ଶୁଣି ଦମନକ ପୁଣି କହୁଛୁ ।
ମନ୍ତ୍ରୀ ଯେତେ କାଳ । ପ୍ରଧାନ ଅପ୍ରଧାନ ହୋଏ ବୋଲ । ୬୫ ।

ପହି ଦେହ ସ୍ୱଭାବରୁ ତାହାର । ନୋହେ ଅଉତ୍ତମ ଖଳ ଉଦାର ।
ପ୍ରୀତି ଅପ୍ରୀତି ଦୁଇ । ଅପଣା କର୍ମ ଲୋକଙ୍କୁ ନଥାଇ ।
ତ କାହାକି । ଉତ୍ତମ ମଧ୍ୟମ ଅଧମ ଦେଖ । ୬୬ ।

ପଥରକୁ ପର୍ବତ ପରେ । ଲୋକ ନେଇ ଥୋଇ ଅତି କଷ୍ଟରେ
ଉପରେ ତଳକୁ ପକାଇ । ତେମନ୍ତେ ଅପଣା ଗୁଣ ଦୋଷ ହୋଇ ।
ସ୍ୱସ୍ଥାବର୍ତ୍ତେ । କିଛି ପାଇ ନୋହେ ଦୋଷ ଅର୍ଜନେ । ୬୭ ।

ହିଁ ଧେଯ୍ୟରୁ ସବୁ ଉଦ୍ୟମରେ । ହୋଏ ଶୁଣି କରଟକ ବୋଲେ ।
ମ୍ଭେ କହୁଛ କହ ତା ଶୁଣି । ପୁଣି ଦମନକ କହଇ ବାଣୀ ।
ଏହି ପିଙ୍ଗଳକ । କର୍ପା ନ ପିଇ ଅଇଲା ଉଦକ । ୬୮ ।

ରଟକ କହେ ତୁମ୍ଭେ କ ଜାଣ । ଦମନକ କହେ ଜାଣେ ଏମାନ ।
ହିଲା କଥାକୁ ପଶୁ ଜାଣଇ । ହସ୍ତି ନାଗ ଯେ ଟିପିଲେ ବହଇ ।
ତୁଣ୍ଡେ ନ କହିଲେ । ଜାଣଇ ପଣ୍ଡିତ ତା ଇଙ୍ଗିତରେ । ୬୯ ।

ର ଅଭିପ୍ରାୟ ବୁଦ୍ଧି ଜାଣଇ । ବୁଦ୍ଧି ବଳେ ମୁ ଏକଥା ମଣଇ ।
ଯଣ୍ ସେ ପ୍ରସ୍ତାବ ଭୁଲ୍ଲ ବଚନ । ସଦଭାବଠାରେ ପ୍ରିୟ ବଚନ ।
ବଳର ସମାନଂ । କୋପ ଜାଣେ ସେ ଯେ ପଣ୍ଡିତ ଜନ । ୭୦ ।

ରଟକ ପୁଣି କହେ ଶୁଣ । ଦମନକ ତୁମ୍ଭେ ସେବା ନ ଜାଣ ।
ଯ ଜନ ନ ଡାକଲେ ବଳେ ଯାଇ । ନ ପଚ୍ଚର ଯେ ବହୁତ କହଇ ।
ଅପଣା ବଡ଼ାଇ । କହଇ ଯେ ତାକୁ ରାଜା ଘଡ଼ାଇ । ୭୧ ।

ଦମନକ କହି ଭୋ ମିତ ଶୁଣ । କରୂପେ ମୁହିଁ ନ ଜାଣେ ସେବନ
ସ୍ବଭବରେ କ ଅଛୁ ଅସୁନ୍ଦର । ସୁନ୍ଦର ଅବା କେ ଅଛୁ ହେ ନର
ଯାହାର ମନର । ଯେ ଇଚ୍ଛା ହୁଅଇ ସେହି ସୁନ୍ଦର । ୭୨ ।
ଯାହାର ଯାହାର ଯେ ଇଚ୍ଛା ଥିବ । ତାହା ଜାଣି ସେ ନରକୁ ସେ
ଅନୁସର କର ପଣ୍ଡିତ ଜନ । ଆପଣା ବଶକୁ ନଏ ବହନ ।
ମୁ ଯାହା କହଇ । ତୋ ମନକୁ ଆସୁଅଛୁ କ ନାହିଁ । ୭୩ ।
ଏଠାରେ କେ ଯେବେ ପ୍ରଭୁ ବୋଲିବ । ତେବେ ମୁ ଏଠାରେ ଅଛୁ କ
କ ଅଜ୍ଞା ହେଉଛୁ ଦଅ ବୋଲିବ । ରାଜା ଆଜ୍ଞାକୁ ଶିରରେ ଘେନ
ଆପଣାର ଶକ୍ତି । ଶୃହିଁ ଅନୁସରିବ ମହୀପତି । ୭୪ ।
ଯେଉଁ ମାନବ ହେବ ଧୈର୍ଯ୍ୟବନ୍ତ । ଥିଇ ପରାଏ ହେବ ଅନୁଗତ ।
ଆଜ୍ଞା ହେଲେ ସେହି କ୍ଷଣେ କରଇ । ସେ ନର ରାଜସଭାରେ ବସଇ
କରଟକ କହି । ଶୁଣ ଶୁଣ ହେ ଦମନକ ଭାଇ । ୭୫ ।
ରାଜାଠାକୁ ଅସମୟେ ତୁ ଯିବୁ । ନ ପୁଣି ରାଜା ଅବଜ୍ଞ ତୁ ହେବୁ
ଦମନକ କହେ ଶୁଣ ହେ ମିତ । ତଥାପି ସେବକ ସ୍ୱାମିର ହିତ ।
ଅବଶ୍ୟ କରିବ । ପ୍ରତକ୍ଷଣେ ତା ନିକଟେ ରହିବ । ୭୬ ।
ଏକାର୍ଯ୍ୟରେ ଦୋଷ ହୋଇବ ଅବା । ଏମନ୍ତ ବଶ୍ୟୁର କ ନ କରି
ଏ ଯେ କୁତ୍ସିତ ପୁରୁଷ ଲକ୍ଷଣ । କଏସେ ଅଜାର୍ଣ୍ଣ ଭୟେ ଭକ୍ଷଣ ।
ନ କରଇ କହି । ଭାଇ କରଟକ ଧଇର୍ଯ୍ୟ ବହି । ୭୭ ।
ଅଙ୍କ ଯେ ଅକୁଲୀନ ଅସଙ୍ଗତ । ଯେବେହେଁ ରାଜ ସମୀପରେ ସ୍ଥିତ ।
ସେହି ରାଜାର ହୁଅଇ ସମ୍ମତ । ଅନ୍ୟ ଜନ ନୋହେ ତା ଅଭିମତ
ସ୍ତ୍ରୀ ଲତା ନୃପତି । ଯେ ପାଖରେ ଥାଇ ତାକୁ ଭଜନ୍ତି । ୭୮ ।
କରଟକ କହେ ଭୋ ମିତ ଶୁଣ । ତୁମ୍ଭେ ଯାଇ କ କହିବ ବଚନ ।
ଦମନକ କହେ ରାଜା ବିରକ୍ତ । ଅନୁରକ୍ତ କବା ଜାଣିବା ମିତ ।
କରଟକ କହେ । କେମନ୍ତେ ରାଗ ବିରାଗ ଜାଣି ହୋଏ । ୭୯ ।

ଶୁଣି ମେଠ ଦମନକ କହଇ । ରାଜା ଯେବେ ଦୂରୁ ଦେଖି ହସଇ ।
ପଚ୍ଛରଇ ବଡ ଆଦର କରି । ପଛେ ଗୁଣ ଗାଇ ସ୍ମରଣ କରି ।
ସ୍ପୃହୁ ଦ୍ରବ୍ୟ ପାଇ । ବୋଲଇ ଏହାପରି ଉତ୍ତମ ନାହିଁ । ୮୦ ।
ତାହା ସେବାରେ ଅନୁରାଗ କରେ । ପ୍ରୀତରେ ଧନକୁ ଦାଅଇ କରେ ।
ଦୋଷକୁ ଲୁଚ୍ଛଇ ଗୁଣ କହଇ । ଅନୁରାଗର ଜାଣ ଚିହ୍ନ ଏହି ।
ଏବେ ବିରାଗର । କହିବା ଶୁଣରେ ସୁବୁଦ୍ଧି ବର । ୮୧ ।
ଦେଖା କରିବା ଏମନ୍ତ ବୋଲଇ । ଦି ଦେଇ ଯେ ଆଶା ବଢାଇ ଥାଇ ।
ଜାଣିବ ସେହି ପ୍ରଭୁ ବିରକତ । ଜାଣି ଏହାକୁ କରିବ ଅପ୍ରୀତ ।
ତା ମନକୁ ଚାହିଁ । କହିବ ମୁଁ ଯାହା କରିବ ସେହି । ୮୨ ।
ଦମନକକୁ କରଟକ କହେ । ପ୍ରସଙ୍ଗ ବିନା କହିବାର ନୋହେ ।
ଅସମୟରେ ଯେବେ ବୃହସ୍ପତି । କହନ୍ତି ଯେବେ ହୁଅଇ ବିପତ୍ତି ।
ପାଇ ଅପମାନ । ଅସମୟେ ନ କହିବ ବଚନ । ୮୩ ।
ଦମନକ କହେ କି ଅହେ ମିତ । ଭୟ କରିଅଛ ଛାଡ଼ ଭୁରିତ ।
ସମୟ ନ ଚାହିଁ କହିବ ନାହିଁ । ଜଗି କରିବାର ମୁହିଁ ଜାଣଇ ।
ଯେଣୁ ଏତେଠାରେ । ନ ପଚାରିଲେ କହିବ ତାହାରେ । ୮୪ ।
ଯେତେବେଳେ ପଡ଼ିଥିବ ବିପତ୍ତି । ଯେଉଁ କାଳେ ଯେଉଁ କାର୍ଯ୍ୟ ହୁଅନ୍ତି
ଯେବେ ଜାଣିବ ତେବେ ନ ପଚାରି । ଥିଲେ କହିବା ହିତ ଅନୁସରି ।
ରାଜାର ସେବକ । କହିବ ବିଚାରି ହିତ ଅନେକ । ୮୫ ।
ଯେବେ ଅସମୟ ଜଗି ନୃପତି । ନ କହିବ ଯେବେ ସେହି କୁମନ୍ତ୍ରୀ ।
ଯେଣେ କରି ହୋଏ ଜୀବନ ବୃଦ୍ଧି । ଯେଣେ କରି ହୋଏ ଲୋକରେ କୀର୍ତ୍ତି
ସେହି ତାକୁ ଗୁଣ । ବୋଲି ସେ ଥିଲେ ଗୁଣବନ୍ତ ଜନ । ୮୬ ।
ମୁଁ ଯାଉଛି ମୋତେ ଅନୁଜ୍ଞା ଦିଅ । କରଟକ ବୋଲେ ଶୁଭରେ ଯାଅ
ଯେ ବାଞ୍ଛା ଅଛି ହେଉ ସେ ପୂରି । ଦମନକ ଗଲା ହୋଇ ସହରି ।
ସେ ବିସ୍ମୟ ହୋଇ । ସିଂହ ସମୀପରେ ପ୍ରବେଶ ଯାଇ । ୮୭ ।

ଦୂରୁ ସିଂହଙ୍କୁ ଦେଖି ଦମନକ । ପୁଣି ପୁଣି ପାଦେ ପଡେ ଅନେକ ।
ସିଂହ ବୋଇଲା ଦମନକ ଶୁହଁ । ଥିଲ ବହୁତ କାଳେ ଦେଖିଲୁଇଁ ।
ଦମନକ କହି । ତୁମ୍ଭର ମୋହରେତ କାର୍ଯ୍ୟ ନାହିଁ । ୮୮ ।

ତଥାପି ଯେ ସେବକ ହୋଇଥିବ । କେବେହେଁ ସ୍ୱାମୀ ପାଶ ନ ଛାଡବ ।
ଏଣୁ ତୁମ୍ଭଠାକୁ ଅଇଲ ମୁହିଁ । ଭଲ ନ କର ବା ଶୁଣ କହଇ ।
ରଜା ବୋଲେ କହ । କହେ ଦମନକ ଶୁଣ ହେ ସିଂହ । ୮୯ ।

ରଜାମାନଙ୍କର ଦନ୍ତ ଘର୍ଷଣ । ସେହିରୂପରେ କର୍ଣ୍ଣ କଣ୍ଡୂୟନ ।
ଏ ଦୁଇ କାର୍ଯ୍ୟେ ତୃଣକୁ ଆଦର । ଅଙ୍ଗ ବାକ୍ୟରେ କି ନ କରେ ନର ।
ସୁବୁଦ୍ଧି ଲୋକର । ବୁଦ୍ଧି ନାଶ ତୁମ୍ଭେ ଶଙ୍କା ନ କର । ୯୦ ।

ଯଦେ ମଣିକି ଭୂଷଣ କରଇ । କଅବା କାଚକୁ ଶିରେ ଧରଇ ।
ଯେଉଁରୂପେ ହେଉ ସେରୂପେ ହେଉ । କାଚରୁ ମଣି ଜଣା କେ ସେ କହୁ
ଯେହୁ ସେ ନିର୍ଗୁଣ । ଆଦର କଲେ କି ହୋଏ ସଗୁଣ । ୯୧ ।

ଧୀର ଯାହାର ବୁଦ୍ଧି ହୋଇଥାଇ । ଅନାଦର କଲେ ତାଗ କି ଯାଇ
ଦେଖ ଅନଳକୁ ତଳକୁ କଲେ । ଶିଖା ତାହାର ତଳକୁ ନ ଚଳେ ।
ରଜା ସେ କେବଳ । ଜାଣି ସେବକକୁ କରେ ସଫଳ । ୯୨ ।

ଯେବେ ରଜା ସବୁ ଭୃତ୍ୟଙ୍କ ଠାରେ । ବିଶେଷ ନ ଜାଣି ବେଭାର କରେ
ତହିଁରେ ଯେ ଉପକାରସମର୍ଥ । ଉପକାର ତାର ହୁଏ ବ୍ୟର୍ଥ ।
ସେ ଉତ୍ସାହ ହୀନ । ହୋଇ ନ କରଇ କାର୍ଯ୍ୟରେ ମନ । ୯୩ ।

ଅତଏବ ପୁରୁଷ ତିନ ପ୍ରକାର । ଉତ୍ତମାଧମ ମଧ୍ୟମ ବିଚାର ।
ଯାହାର ଯେଉଁ କର୍ମ ଯୋଗ୍ୟ ହେବ । ତହିଁରେ ତାକୁ ନିଯୁକ୍ତ କରିବ ।
ଯେ ଯେଉଁ କାର୍ଯ୍ୟରେ । ସମର୍ଥ ତାକୁ ରଖିବ ତହିଁରେ । ୯୪ ।

ସେବକ ଅଲଂକାର ଦୁହେଁ ସରେ । ଏହାଙ୍କୁ ନିଯୁକ୍ତ ସ୍ଥାନରେ କର ।
ମୁ ପ୍ରଭୁ ବୋଲି ଯେଉଁ ରଜା ପୁଣି । ଗୋଡେ ବାନ୍ଧଇ ନେଇ ଚୂଡାମଣି
ସେ ରଜାର ଦୋଷ । ଚୂଡାମଣି କି କରୁ ହୁଏ ନାଶ । ୯୫ ।

ଯେ ସେ କନକ କୁଣ୍ଡଳ ଖଚିତ । ହେବାକୁ ମଣି ହୁଅଇ ଉଚିତ ।
ସେ ମଣି ଶେଂଶାରେ ଯେବେ ଖଞ୍ଜାଇ । ତେବେ ମଣି କ ଶୋଭାକୁ ନ ପାଇ ।
ଖଞ୍ଜିଲା ଲୋକର । ନିନ୍ଦା ହୁଅଇ ସଂସାର ବାହାର । ୯୬ ।
ଏ ଅନୁରାଗୀ ଏ ସେ ବୁଦ୍ଧିମାନ । ଏ ସେବକ ନିଜ ଏ ମୋର ଆନ ।
ଏମନ୍ତ ବିଶେଷ ଜାଣଇ ଯେହୁ । ଭୃତ୍ୟମାନଙ୍କର ସେବିତ ସେହୁ ।
ଯେ ବିଶେଷ ଜାଣେ । ସେହି ରାଜା ସବ ରାଜାରେ ଜଣେ । ୯୭

ଖଡ୍ଗାଦି ଶସ୍ତ୍ର ବୀଣା ବାଣୀ ଶାସ୍ତ୍ର । ମନୁଷ୍ୟ ନାରୀ ଏମାନେ ସମସ୍ତ ।
ଯୋଗ୍ୟ ପୁରୁଷଠାରେ ଯୋଗ୍ୟ ହୁଅନ୍ତି । ଅଯୋଗ୍ୟ ପୁରୁଷେ ଯୋଗ୍ୟ ନୁହନ୍ତି
ଏମନ୍ତ ପ୍ରକାଶୁଁ । ଯୋଗ୍ୟ ପୁରୁଷ ପାଶେ ଅମ୍ଭେ ବସୁଁ । ୯୮ ।
ଯେଉଁ ସେବକ ଅସମର୍ଥ ହୋଇ । ତାହାଠାରୁ ଅବା କି କାର୍ଯ୍ୟ ପାଇ ।
ଯେ ସେ ସମର୍ଥ ଅପକାରୀ ହେବ । ସେହି ଲୋକରେ ବା କି କାର୍ଯ୍ୟ ହେବ
ମୁ ଭକ୍ତ ଶକତ । ମତେ ନ କର ପ୍ରଭୁ ଅବଜ୍ଞାତ । ୯୯ ।
ସମର୍ଥ ସେବକକୁ ରାଜା ଯେବେ । ଅବଜ୍ଞା କରଇ ସମସ୍ତେ ତେବେ ।
ଭୃତ୍ୟ ଜନତାକୁ ଛାଡ ଯାଆନ୍ତି । କେହି ପଣ୍ଡିତ ପାଖେ ନ ରହନ୍ତି ।
ନୁହଇ ସେ ନୀତ । ନୀତ ଗଲେ ରାଜାକୁଳ ନୁହନ୍ତି । ୧୦୦ ।
ରାଜା ଯାହାକୁ ଆଦର କରଇ । ସମସ୍ତ ଲୋକରେ ସେ ପୂଜ୍ୟ ହୋଇ
ନୃପ ଅବଜ୍ଞା କରଇ ଯାହାକୁ । ସମସ୍ତେ ଅବଜ୍ଞା କରନ୍ତି ତାକୁ ।
ନୀତିରେ କହୁଛି । ରାଜା ଭଲ କଲେ ଭଲ ହେଉଛି । ୧୦୧ ।
ବାଳକ ଯେବେ ଉଚିତ କହିବ । ପଣ୍ଡିତ ହେଲେ ସେ କଥା ଘେନିବ ।
ସୂର୍ଯ୍ୟର ପ୍ରକାଶ ଯହିଁରେ ନାହିଁ । ସେଠାରେ ଦୀପ ପ୍ରକାଶ କରଇ ।
ସେ ପଣ୍ଡିତ ଜନ । ଗୁଣକୁ ଘେନଇ ନ ଘେନେ ଆନ । ୧୦୨ ।

ରାଜା ବୋଇଲେ ଦମନକ ଶୁଣ । କପାଁ ଏରୂପେ କହୁଲ ବଚନ ।
ପୂ ଅମ୍ଭର ପ୍ରଧାନ ମନ୍ତ୍ରୀ ସୁତ । ଖଳ ବଚନ ଶୁଣିବା କୁପିତ ।
ତୁମ୍ଭେତ ନ ଅଛ । ମନ ଦୁଃଖ କର ଅମ୍ଭର ପାଶ । ୧୦୩ ।

କି କାର୍ଯ୍ୟ ନିମନ୍ତେ ଅଇଲ ତୁମ୍ଭେ । ଦମନକ କହି ଶୁଣିମା ଅମ୍ଭେ ।
ଦମନକ କହେ କିଛି ପୃଚ୍ଛିବ । ରାଜା ବୋଲେ କହ ମୁ ତା କହିବ ।
ଦମନକ ବୋଲେ । ଯାହା କହିବ ମୁ ଶୁଣନ୍ତୁ ଭଲେ । ୧୦୪ ।

ତୁମ୍ଭେ ବଡ ତୃଷାର୍ତ୍ତ ହୋଇଥିଲ । ଜଳ ନ ପିଇ ଲେଉଟି ଅଇଲ
ରାଜା କହିଲେ ଭଲ ପଚାରୁଛ । ବିଶ୍ୱାସରେ କିବା କହିବା ମିଛ ।
ଦମନକ ଶୁଣ । ତୋଠାରୁ କେ ଅଛି ବିଶ୍ୱାସୀ ଜନ । ୧୦୫ ।

ଏ ବନେ ଅପୂର୍ବ୍ବ ଜନ୍ତୁ ରହିଲା । ଏହିହେତୁ ଏ ବନ ତ୍ୟାଗ ହେଲା ।
ତୁମ୍ଭେତ ଶୁଣିଥିବ ସେ ଶବଦ । ତାହା ଶୁଣି ମୁହିଁ ହେଲି ତବଦ ।
ଶବ୍ଦ ଅନୁସାର । ଏ ବଡ ଜନ୍ତୁ ମୁ ମନେ ବିଚାର । ୧୦୬ ।
ଏରୂପେ ମହାଭୟ ଅସି ହେଲା । ଶୁଣି ପୁଣି ଦମନକ କହିଲା ।
ଦେବ ଅଛି ମହାଭୟ କାରଣ । ଅମ୍ଭେ ଶବ୍ଦକୁ ଶୁଣିଛୁଁ ଶ୍ରବଣ ।
ସେ କୁମନ୍ତ୍ରୀ ହୋଏ । ପ୍ରଥମ ଯେ ଯୁଦ୍ଧେ ପଳାଅ କହେ । ୧୦୭ ।

ବନ୍ଧୁର ନାରୀର ଭୃତ୍ୟ ଜନର । ଅମ୍ଭ ବୁଦ୍ଧିର ଆପଣା ବଳର ।
ସାରକୁ ଚିହ୍ନି ବିପତ୍ତି କାଳରେ । ଯେହ୍ନେ ସ୍ୱର୍ଣ୍ଣ ନିକଷ ପଥରେ ।
ଶୁଣି ରାଜା କହି । ଏଠାରେ କି କରିବା କହ ଭାଇ । ୧୦୮ ।
ମୋର ବଡ ଶଙ୍କା ହୋଇଛି ମନ । ଶୁଣି ଦମନକ କହେ ବଚନ ।
ମନେ ବିଚାରି କହେ ମୁହିଁ ଯେବେ । ଜୀଇଅଛି ତୋର କି ଦୁଃଖ ତେବେ ।
କରଟକ ଅଣ । ଅଣି କର ତୁମ୍ଭେ ତାକୁ ପୂଜନ । ୧୦୯ ।

ଏ ଯେ ତୁମ୍ଭର ବିପତ୍ତି ସମୟ । ଏଥିରେ ଏମାନେ ହେବେ ସହାୟ ।
ଯେବେ ଏମାନଙ୍କୁ ଅଣିବ ନାହିଁ । ତେବେ ତୁମ୍ଭେ କାର୍ଯ୍ୟ ପାରିବ କାହିଁ
ରାଜା ଦମନକୁ । ପୁଣି ବୋଲେ ଯାଇ ଅଣ ତାହାକୁ । ୧୧୦ ।

ଶୁଣି ଦମନକ ବାହାର ହେଲା । ଭୟ ପ୍ରତିକାର ପ୍ରତିଜ୍ଞା କଲା ।
କରଟକକୁ ସେ ଯାଇ କହିଲା । ରାଜା ଆଜ୍ଞା କଲେ ଅସ ବୋଇଲା ।
କରଟକ ଶୁଣି । କହିଲା ଅନ୍ୟାୟ କଲତ ପୁଣି । ୧୧୧ ।

ସଖେ ଏ ଭୟ ନିବାରଣ ହେତୁ । ନ ଜାଣି ବାଜିଲ କପାଇଁ କେତୁ ।
ରାଜା ପ୍ରସାଦକୁ ଯେନ ଅଜଳ । ନ କର ଉପକାର ନୋହେ ଭଲ ।
କହିଲି ମୁଁ ଜାଣ । ଉପକାର କଲେ ଯେନନ୍ତ ପୁଣ । ୧୧୨ ।
ପୁଣି ବଶେଷେ ରାଜ ଅନୁଗ୍ରହ । ଯହିଁରେ ଲକ୍ଷ୍ମୀ କରଅଛ ଗୃହ ।
ଯାହାର ପରାକ୍ରମରେ ବଜୟ । ଯାହାର କ୍ରୋଧରେ ମରଣ ଭୟ ।
ରାଜ ବଷ୍ଣୁ ଅଂଶ । ସେହି ହେତୁରୁ ସେ ନୁହେ ମନୁଷ୍ୟ । ୧୧୩ ।
ନର ଯେ ନୃପତି ଏ ଦୁଇ ଜନ । କେବଳ ମରଣେ ସମାନ ଜାଣ ।
ଆଜ୍ଞା ଦାନ କ୍ଷମା ଧୈର୍ଯ୍ୟ ବକ୍ରମ । ଏମାନେ ରାଜାର କ ହେବ ସମ ।
କହ ଏ ହେତୁରୁ । ରାଜା କ୍ରୋଧ ଯେ ସବୁଠାରୁ ଗରୁ । ୧୧୪ ।
ଦମନକ କହେ ଶୁଣି ହସିଣ । ସଖେ ତୁକ ହୁଅ ତୁମ୍ଭେ ନ ଜାଣ ।
ପୂର୍ବରୁ ଜାଣିଛ ବୃଷ ଗର୍ଜନ । ଆମ୍ଭମାନଙ୍କର ସେହି ଭକ୍ଷଣ ।
ପୁଣି କ କହିବା । ସିଂହର ବଳକୁ ସେ କ ପାଇବା । ୧୧୫ ।
କରଟକ କହେ ହେ ଦମନକ । ପୂର୍ବରୁ ତୁମ୍ଭେ ଜାଣିଥିଲ ଏକ ।
ରାଜା ଆଗେ ତା କହିଥାନ୍ତ ତେବେ । ରାଜା ପ୍ରସାଦକୁ ଯେନଲ ଯେବେ
ଦମନକ କହି । ଏହା କହିଲେ କ ପ୍ରସାଦ ପାଇ । ୧୧୬ ।
ସେବକ ଯେରୂପେ କାର୍ଯ୍ୟ କରବ । ଯେରୂପେ ପ୍ରଭୁ ଅପେକ୍ଷା ନ ଯିବ
ଯେବେ ନରପେକ୍ଷ ପ୍ରଭୁଙ୍କୁ କର । ଭୃତ୍ୟ ଦଧିକର୍ଣ୍ଣ ପ୍ରାଏ ମର ।
କରଟକ କହି । କହ ଏ କଥାଟି କରୂପେ ହୋଇ । ୧୧୭ ।
ଦମନକ କହେ ଶୁଣ ହେ ମିତ । ଅର୍ବୁଦଶିଖର ନାମେ ପର୍ବତ ।
ତହିଁ ମହାବକ୍ରମ ସିଂହ ନାମ । କନ୍ଦରରେ କରଥାଇ ବଶ୍ରାମ ।
ସେହି ଶୋଇଥିଲା । ମୂଷିକ ତାହାର କେଶ କାଟିଲା । ୧୧୮ ।
ସେ ସିଂହ କେଶାଗ୍ର ଛେଦ ଦେଖିଲା । ଅତି କ୍ରୋଧଭରେ ହୋଇ ରହିଲା
ମୂଷା ଗର୍ତ୍ତରୁ ବାହାର ହେବାର । ନ ଦେଖି ମନେ ଚିନ୍ତା ହେଲା ତାର
ଏହା ଶୁଣି ଥାଇ । କ୍ଷୁଦ୍ର ଶତ୍ରୁ ହେଲେ ମାରି ନ ଯାଇ । ୧୧୯ ।

କ୍ଷୁଦ୍ରର ଶତ୍ରୁ ଯେ କାହାର ହୋଇ । ପରାକ୍ରମରେ ତାକୁ ଜିଣି ନୋହି
ତାକୁ ମାରିବାକୁ ବିଚାର କଲେ । ତା ଅନୁରୂପେ ସୈନ୍ୟ କରି ଭଲେ
ଏମନ୍ତ ବିଚାର । ବନ ଛାଡି ଗ୍ରାମକୁ ଗଲା ହରି । ୧୨୦ ।

ଯାଇ ଦଧିକର୍ଣ୍ଣ ନାମେ ବିଡ଼ାଳ । ଆଦରରେ ତାକୁ ଆଣିଲା ଘର ।
ମାଂସାଦି ଦେଇ ପୋଷିଣ ରଖିଲା । ସେ ଦିନୁ ମୂଷା ବାହାର ନୋହିଲା
ସୁଖେ ସିଂହ ଶୋଇ । ନିଦ୍ୟରେ ଅକ୍ଷତ କେଶ ବଢ଼ଇ । ୧୨୧ ।

ଯେଉଁଦିନ ମୂଷା ଶବ୍ଦ ଶୁଣଇ । ସିଂହ ବିଡ଼ାଳ ଆଦର କରଇ ।
ଏକ ଦିନେ ମୂଷା କ୍ଷୁଧା ପୀଡିତ । ହୋଇ ବାହାର ଛଡ଼ିଲା ତା ଗାତ ।
ବିଡ଼ାଳ ଦେଖିଲା । ମୂଷାକୁ ଧରି କ୍ଷୁଧା ନିବାରିଲା । ୧୨୨ ।

ଯହୁଁ ସେହି କାର୍ଯ୍ୟ ସିଦ୍ଧ ହୋଇଲା । ବିଡ଼ାଳ ଆଦର ସିଂହ ଛଡ଼ିଲା ।
ଦଧିକର୍ଣ୍ଣ ଯେ ଆହାର ନ ପାଇ । ଶୁଖି ଶୁଖି ମଲା କନ୍ଦରଠାଇଁ ।
ଏଣୁ ନ କହିଲି । ପ୍ରଭୁ ଅପେକ୍ଷା ମୋଠାରେ ରଖିଲି । ୧୨୩ ।

ଦମନକ କରଟକକ ଥୁଇ । ସଂଜୀବକର ସମୀପକୁ ଯାଇ ।
କରଟକ ତରୁତଳେ ବସିଲା । ଦମନକ ବଳଦକୁ କହିଲା ।
ଆରେ ଆରେ ବୃଷ । କହୁଅଛି ମୁହିଁ ଶୁଣ ସନ୍ଦେଶ । ୧୨୪ ।

ଅଛି ଏ ବନେ ସିଂହ ପିଙ୍ଗଳକ । ତାହାର ଯେହୁ ଅରଣ୍ୟ ରକ୍ଷକ ।
ରାଜ ସେନାପତି କରଟକକ । ତତେ ଆଜ୍ଞା କରିଛନ୍ତି ଅନେକ ।
ଆସ ତୁ ସତ୍ୱର । ନ ଆଇଲେ ପଳାଇ ଯା ତୁ ଦୂର । ୧୨୫ ।

ନ ଆସିବୁ ଯେବେ ବିରୋଧ ହେବ । ଶୁଣି ରାଜା ତୋରେ ଦଣ୍ଡ ବିଧିବ
ଏହା ଶୁଣି ସଂଜୀବକ ସତ୍ୱର । ଗଲା ଯାଇ ସେ କଲା ନମସ୍କାର ।
କରଟକ ପାଦେ । ଦେଶ ବ୍ୟବହାର ନ ଜାଣେ ହାଦେ । ୧୨୬

ସଂଜୀବକ ହସ୍ତୀ ଉପରେ ଥୋଇ । ନାଗରୀ ପିଠେ ଭୁହାଇ ଭୁହାଇ
ଟସ ଟୋଲୁ ଅଛି କି ବଳରୁ ବୁଦ୍ଧି । ସର୍ବଜନେ ଜାଣ ଅତି ପ୍ରସିଦ୍ଧି ।
ବୁଦ୍ଧି ନ ଥିଲାକୁ । ଏହା ପରେ ପିନ୍ଧୁଛି ନାଗରୀକୁ । ୧୨୭ ।

ସଂଜୀବକ କହେ ହେ ସେନାପତି । ମୁହିଁ କି କରିବ କହ ତତ୍ପତି ।
କରଟକ କହେ ବଳଦ ଶୁଣ । ଯେବେ ଏଠାରେ ରହିବାକୁ ମନ ।
ଆସ ତେବେ ଆସ । ସିଂହ ପାଦେ ତୁହି ଶରଣ ପଶ । ୧୬୮ ।
ସଂଜୀବକ କହେ ଅଭୟ ଦେବ । ତେବେ ମନ ମୋର ନିର୍ଭୟ ହେବ
ଶୃଗାଳ ବୋଲନ୍ତେ କରଟକ କହି । କିଛି ଶଙ୍କାକୁ ମନରେ ନ ବହି ।
ସେହି କି କରିବ । ଧନ୍ୟ ସର୍ପକୁ ଗରୁଡ଼ ଛୁଇଁବ ॥୧୬୯ ।
କୋମଳ ଯେ ଉଚ୍ଚ ହୋଏ ପ୍ରଣତ । ସେ ତୃଣ କିପାଁ ଉପାଡ଼ିବ ବାତ
ଯେତେ ଉଚ୍ଚ ବୃକ୍ଷ ପ୍ରଣତ ନୋହି । ସେହି ତାକୁ ବାୟୁ ଭାଙ୍ଗି ପକାଇ
ସାନଠାରେ ଛାଡ଼ି । ବଡ଼ଠାରେ ବଡ଼ କରଇ ରଡ଼ି । ୧୭୦ ।
ଏଥି ଅନ୍ତେ ସଂଜୀବକକୁ ସେନ । କିଛି ଦୂରେ ରଖି ଗଲେ ସେ ବେନ
ଚଞ୍ଚଳ ରାଜା ନିକଟେ ହୋଇଲେ । ଦେଖିଣ ରାଜା ଆଦରେ କହିଲେ
ଦେଖିଲ ସେ କିଏ । ଦମନକ କହେ କେହି ଗୋଟିଏ । ୧୭୧ ।
ଦେବ ତାଙ୍କୁ ଯେଉଁ ରୂପେ ତର୍କିଲ । ସେହିରୂପେ ସେ ଅଟେ ମହାବଳ
ବର୍ତ୍ତମାନ ସେ ତୁମ୍ଭର ଦର୍ଶନ । କରିବ ତୁମ୍ଭେ ହୋ ଅଧୀର ମନ ।
ତା ଶବଦ ଶୁଣି । କିପାଁ ଭୟ କଲ ହେ ନୃପମଣି । ୧୭୨ ।
ଶବ୍ଦ କାରଣ ନ ଜାଣିବ ଯେବେ । ଶବ୍ଦକୁ ଭୟ ନ କରିବ ତେବେ ।
ଶବ୍ଦର ହେତୁ ପାଇଲି ଜାଣିଲା । ରାଜା ତାକୁ ବହୁ ଆଦର କଲା ।
ଶୁଣି ରାଜା କହି । ଦମନକ କହ ଏକଥା ବହି । ୧୭୩ ।
ଦମନକ କହେ ରାଜନ ଶୁଣ । ଶ୍ରୀପର୍ବତେ ବ୍ରହ୍ମପୁର ପତ୍ତନ ।
ତାହା ଶୃଙ୍ଗେ ରାକ୍ଷସ ଘଣ୍ଟାକର୍ଣ୍ଣ । ବସିଛି ବୋଲି ଲୋକରେ ଶ୍ରବଣ ।
ଘଣ୍ଟା ଏକ ଚୀଲେ ! ସେନ ଚୋର ପଳାଇଲା ସହରେ । ୧୭୪
ସେଠାରେ ତାହାକୁ ବାଘ ମାଇଲେ । ବାନର ଘଣ୍ଟା ପାଇ ବଜାଇଲେ
ସକଳ ପ୍ରାଣୀ ଚକିତ ହୋଇଲେ । କି ଘଣ୍ଟା ଏ ଶୁଭୁଅଛି ବୋଇଲେ
ନିଶ୍ଚୟ ରାକ୍ଷସ । ଘଣ୍ଟା ବଜାଉଛି ଖାଇ ନୃମାଂସ । ୧୭୫ ।

ସବୁ ଖାଇବ ଏହି ଘଣ୍ଟା କର୍ଣ୍ଣି । ଭୟେ ପଳାଇଲେ ସମସ୍ତ ଜନ ।
ଏକ ପୋଇଲି ସେ ହେତୁ ଜାଣିଲା । ରାଜା ଆଗରେ ଯାଇ ଜଣାଇଲା
ଯେବେ ଦେବ ଧନ । ଘଣ୍ଟାକର୍ଣ୍ଣିକୁ କରିବ ନିଧନ । ୧୩୬ ।

ଶୁଣି ରାଜା ଦେଲା ବହୁତ ଧନ । ସେଦିଣ ପୋଇଲି କଲା ଗମନ ।
ମଣ୍ଡଳ ମାତୃପୂଜା କପଟରେ । ଦେଖାଇ ମଧୁର ଫଳକୁ କରେ ।
ସେନିକଟ ଗଲା । ବାନରମାନଙ୍କ ଅଗ୍ରେ ଥୋଇଲା । ୧୩୭ ।

ବାନରେ ଘଣ୍ଟାକୁ ଛାଡିଣ ଫଳ । ସେନ ସେହିକ୍ଷଣି କଲେ କବଳ ।
ପୋଇଲି ଘଣ୍ଟା ସେଦିଣ ଆଣିଲା । ନଗରେ ସେହି ସର୍ବପୂଜ୍ୟ ହେଲା
ମୁହିଁ କହୁଅଛି । ଶବ୍ଦମାତ୍ରରୁ ଭୟ ନୋହେ କିଛି । ୧୩୮ ।

ଏଥିଅନ୍ତେ ସଂଜୀବକକୁ ଆଣି । ଦେଖାଇଲେ ରାଜା ଆଗରେ ପୁଣି ।
ସେ ଦିନରୁ ସଂଜୀବକ ପିଙ୍ଗଳ । ସୁଖେ ଦିନ ନେଲେ ସେ କିଛିକାଳ
ଏଥୁଅନ୍ତେ ଶୁଣ । ଆଇଲା ରାଜା ଭାଇ ସ୍ତବ୍ଧକର୍ଣ୍ଣ । ୧୩୯ ।

ରାଜା ତାକୁ ଦେଖି ଦେଇ ଆସନ । ପଶୁ ମାରିବାକୁ ଗଲା ବହନ ।
ଯିବା ଦେଖି ସଂଜୀବକ ପଚାରେ । ଅଜ ମୃଗ ମାଂସ ନାହିଁକି ଘରେ
ସେ ରାଜା କହନ୍ତି । ଦମନକ କରଟକ ଜାଣନ୍ତି । ୧୪୦ ।

ସଂଜୀବକ କହେ ଅଛି କି ନାହିଁ । ବୁଝି ରାଜା ବୋଲେ ସେଥିକି ଚାହି
ସଂଜୀବକ ଶୁଣି ପୁଣି ସେ କହେ । ଏତେ ମାଂସ ସେ କି ଖାଇଲେ ଦୁ
ରାଜା କହେ ପୁଣି । ଖାଇଲେ ବାହିଲେ ମତେ ନ ମାନି । ୧୪୧

ପ୍ରତି ଦିନ ଦୁହିଙ୍କର ଏକ୍ରମ । ସଂଜୀବକ କହେ ଏତ ବିଷମ ।
କିଏ ତୁମ୍ଭଙ୍କୁ ଅଗୋଚର କରି । ଏହାକୁ ତାହାକୁ ଦିଅନ୍ତି ଭରି ।
ରାଜା ସେ କହୁଛି । ଏହି କଥା ପ୍ରତିଦିନ ହେଉଛି । ୧୪୨ ।

ସଂଜୀବକ ପୁଣି କହେ ବଚନ । ଏକଥା ଉଚିତ ନୁହଇ ଜାଣ ।
ଯେଉଁ ହେତୁରୁ ନୃପଙ୍କୁ ପଚାରି । ଏକଥା ନ୍ୟାୟେ ସବୁ କାର୍ଯ୍ୟ କରି ।
କେବଳ ବିପତ୍ତି । ପ୍ରତିକାର କରିବ ଏ ସେ ନୀତି । ୧୪୩ ।

ଦମନ୍ତ୍ରଲୁ ମନ୍ତ୍ରୀ ଏ ଦୁହେଁ ସର । ଅଳ୍ପ ଦଅଇ ସେ ବହୁତ ଭର ।
କ୍ଷଣକୁ ନ ଗୃହିଁଲେ ମୂର୍ଖ ହୋଇ । କଡ଼ାକୁ ନ ଗୃହିଁଲେ ମାଗେ ଖାଇ ।
ଚିହ୍ନ ନୃପଇ ପଇ । ଏହା କହିଅଛନ୍ତି କେବଳ ମୀଢ । ୧୪୪ ।
ଯେଉଁ ମନ୍ତ୍ରୀ ପାଷ୍ଟ ଗଣ୍ଡାକୁ ଗୃହିଁ । କାର୍ଯ୍ୟ କରଇ ସେ ଶ୍ରେଷ୍ଠ ବୋଲାଇ
ଯନ ଭଣ୍ଡାର ଯେ ରାଜାର ପ୍ରାଣ । ତା ବିନା ପ୍ରାଣ ଯେ ହୁଅଇ ତୃଣ ।
ଏହି କଥା ପୁଣି । ରାଜାର ପ୍ରଧାନ ଦୋଷରେ ଗଣି । ୧୪୫ ।
ଅଚବ୍ୟୟ ଅନବଧାନ ମନ । ଅଧର୍ମରେ ଯେ ଧନ ଅରଜନ ।
ଅପହରଣ ଦୂରେ ଧନ ସ୍ଥିତ । ଏହାକୁ କୋଷ ବ୍ୟସନ କହନ୍ତି ।
ଯେ ଏହା କରଇ । ସେ ରାଜାର ଧନ କ୍ଷୟ ହୁଅଇ । ୧୪୬ ।
ଯାହାର ଅୟାଧିକ ବ୍ୟୟ ନାହିଁ । ଜାଣ ହେ ଚତୁର ପଣ୍ଡିତ ସେହି ।
ଅୟକୁ ନ ଗୃହିଁ ବ୍ୟୟକୁ କଲେ । କୁବେର ସମାନ ଧନୀ ହୋଇଲେ
ସେ ଦରିଦ୍ର ହୋଇ । ସ୍ତବ୍ଧକର୍ଣ୍ଣ କହେ ଶୁଣ ହେ ରାଇ । ୧୪୭ ।
ଦମନକ କରଟକ ଏ ଦୁଇ । ବହୁତ କାଳରୁ ଅଛନ୍ତି ରହି ।
ସନ୍ଧି ବିଗ୍ରହ କାର୍ଯ୍ୟେ ଅଧିକାର । କରନ୍ତୁ ଏତ ଉଚିତ ବେଭାର ।
କାର୍ଯ୍ୟ ଅଧିକାରୀ । ଧନ ଭଣ୍ଡାରେ କେବେ ନ ବିଗ୍ରହ । ୧୪୮ ।
ରାଜକାର୍ଯ୍ୟ ନିଯୋଗ ବିଷୟରେ । ଶୁଣିଛି ତାହା ମୁ କହିବି ତୋରେ ।
ପଣ୍ଡିତଙ୍କୁ କ୍ଷତ୍ରିୟ ବ୍ରାହ୍ମଣ । ଯ୍ୟାଙ୍କୁ ନ ଦେଇ ଅଧିକାର ପଣ ।
ଯେବେ ବନ୍ଧୁ ହୋଇ । କେବେହେଁ ପିତ୍ର ଧନ ନ ଦଅଇ । ୧୪୯ ।
ଯେବେ କରେ ଅଧିକାର କ୍ଷତ୍ରିୟ । ଖଣ୍ଡା ଦେଖାଇ ସେ କରାଏ ଭୟ
ଅଧିକାର ଯେତେକ ବାନ୍ଧବ କରେ । ସବୁ ଧନ ଖାଇ ଗାଢ ଭାବରେ ।
ସେ ଚିର ସେବକ । ଅପରାଧ କଲେ ହୋଏ ନିଃଶଙ୍କ । ୧୫୦ ।
ଉପକାରୀଙ୍କ ଅଧିକାର ଯେବେ । ଦେଇ ସେ ତାକୁ ଗୁଳ୍ମମଣେ ତେବେ
ଯେଣୁ ସେ ପୂର୍ବ ଉପକାର ଥାଇ । ତାକୁ ଦେଖାଇ ସେ ସର୍ବସ୍ୱ ଖାଇ ।
ବାଲକାଳୁ ସଙ୍ଗ । ଯେ ହେବ ତାକୁ ନ ଦେବ ନିଯୋଗ । ୧୫୧ ।

ସର୍ବଦା ସଙ୍ଗରେ ଯେ ବସିଥାଇ । କଳେ ରାଜାଭାବ ଦେଖାଇ ହୋଇ
ରାଜା ଆଜ୍ଞାକୁ ଅବଜ୍ଞା କରଇ । ସେ କସ ରାଜା ବୋଲିଣ ଗର୍ବଇ ।
ଅନ୍ତର୍ଗତେ ଦୁଃଖ । ଯା'ହାର ଥାଇ ସେ ନୋହେ ସୁମୁଖ । ୧୫୨
ତାହାକୁ କଯୋଗ କେବେ ନ କର । ଦୃଷ୍ଟାନ୍ତ ଏ ଶକୁନ ଶକଟାର ।
ସଂପୂର୍ଣ୍ଣ ଅଧିକାରକୁ ନ ଦେଇ । ଉତ୍ତର କାଳେ ସେ ଅସାଧ୍ୟ ହୋଇ
ଏ ସିଦ୍ଧ ଆଦେଶ । ସମ୍ପତ୍ତି କରେ ବିକାର ପ୍ରକାଶ । ୧୫୩ ।
ମିଳିଲେ ଧନକୁ ନ ଦେଇବାର । ଦ୍ରବ୍ୟ ପାଲଟ କାହାକୁ ଦେବାର ।
ନୋହୁ ଏ ବୋଲି ପୁଣି କହିବାର । ବୁଦ୍ଧିହୀନତା ଭୋଗ ଆପଣାର ।
ଅମାତ୍ୟର ଦୋଷ । ଏମାନେ ହୋଇଛନ୍ତି ଉପଦେଶ । ୧୫୪ ।
କଯୋଗୀ ଲୋକକୁ ପୀଡ଼ା ନ ଦେଲେ । ଅନ୍ତଃସାରକୁ ନ ଛଡ଼ନ୍ତି ଭଲେ
ଦୁଷ୍ଟ ବ୍ରଣକୁ ସେ ଯେତେ ଟିପଇ । ତେତେକ ପୂଜ ବାହାର ହୁଅଇ ।
ସେହିରୂପେ ଜାଣ । ଚିପୁଥିଲେ ବାହାରୁ ଥାଇ ଧନ । ୧୫୫ ।
ଯେତେଯେତେ ପୀଡା କଯୋଗୀ ପାଇ । ତେତେକ ତେତେକ ଧନ ଦିଅଇ
ଥରେ ଚିପିଲେ କି ଯ୍ଲାନ ବସନ । ଦେଖ ବାହାରଇ ବହୁ ଜୀବନ ।
ଏହା ସବୁ ଜାଣି । ବ୍ୟବହାର କର ସମୟ ଗଣି । ୧୫୬ ।
ରାଜା କହୁଅଛୁ ଶୁଣ ହେ ଭାଇ । ଏକଥା ଏରୂପରେ ଅଛୁ ହୋଇ ।
ଏହୁହେଁ ମୋର ଆଜ୍ଞା ନ କରନ୍ତି । ସ୍ତବ୍ଧକର୍ଣ୍ଣ ସିଂହେ ପୁଣି କହନ୍ତି ।
ମୋହର ସର୍ବଥା । ଅନୁଚିତ ଶୁଣି ହୋଇଲା ବ୍ୟଥା । ୧୫୭ ।
ଯେ ରାଜାର ଆଜ୍ଞା ଭଙ୍ଗ କରିବ । ପୁଏ ହେଲେହେଁ ତାକୁ ନ ରଖିବ
ଏମନ୍ତ ନୋହିଲେ କେଉଁ ବିଶ୍ୱାସ । ଚିତ୍ରଗତ ସତ ରାଜ ସଦୃଶ ।
ଏହା ଭଲ ନୋହେ । ଆଜ୍ଞା ଭଙ୍ଗ କଲେ ମୃତ୍ୟୁ ନ ରହେ । ୧୫୮
ନରେନ୍ଦ୍ରର ଆଜ୍ଞା ଭଙ୍ଗ ବୃତ୍ତିଦେବ । ମାନଙ୍କର ଯେ ଅନାଦର ହେବ ।
କାରମାନଙ୍କର ଭିନ୍ନ ଶୟନ । ଶସ୍ତ୍ରେ ନୋହି ସେ ବଧ ସମାନ ।
ବିଶେଷରେ ଶୁଣ । ପିତା ପ୍ରାୟେ କର ପ୍ରଜା ରକ୍ଷଣ । ୧୫୯ ।

ଯେମ୍ଭେ ଯା କହିଲୁଁ ସେ କାର୍ଯ୍ୟକର । ଅଜଭ ଅମ୍ଭେ କହୁଛୁଁ ଆହାର
ଏ ଶସ୍ୟ ଭକ୍ଷୁ ସଂଜୀବକ ବୃଷ । ଯନ ଅଧିକାରେ ଏହାକୁ ପୋଷ ।
ଏମନ୍ତ ଶୁଣିଣ । ସେହିରୂପେ କାର୍ଯ୍ୟ କଲା ରାଜନ । ୧୬୦ ।

ଏହିରୂପରେ ରାଜାର ବୃଷର । ପରସ୍ପର ପ୍ରୀତରେ ଗଲା କାଳ ।
ଏମନ୍ତେ ରାଜା ହୁଇ ସେବକ । ଆହାର ନ ପାଇ କଲେ ସେ ଶୋକ
ଦମ କରଟକକ । କପାଇଁ କରୁଛୁ ବହୁତ ଶୋକ । ୧୬୧ ।

ଦମନକ କରଟକ ବଚ୍ନରେ । ମାୟାରୂପରେ ଯେ ମାୟା ନ କରେ ।
ସେ ମୂଢ଼ ବଡ଼ ପରାଭବ ପାନ୍ତି । ଖଲ କପଟୀ ତାହାକୁ ମାରନ୍ତି ।
ଯେସନେ ନଣିତ । ଶରମାରେ ଯେ କବଚ ରହିତ । ୧୬୨ ।

ଦମନକ କହେ ଶୁଣ ହେ ମିତ । ଏଠାରେ କି କର ବସ୍ୱର ଚିତ୍ତ ।
ଯାନ୍ତୁ କର୍ମକୁତ ଏ ଦୁଃଖ ହେଲା । ଆପଣା ଦୋଷରେ ଆପଣେ ମଲା ।
ଶୋକ ଏହିଠାର । କେବେହେଁ କରିବା ନୋହେ ବସ୍ୱର । ୧୬୩

ସ୍ୱର୍ଣ୍ଣ ସ୍ପର୍ଶି ରେଖାକୁ ଲୁବ୍ଧ କରି । ଦୂତକା ଆପଣାକୁ ବାନ୍ଧି କରି ।
ଧାଧୂତ ମଣି ବେଶ୍ୟା ଅର୍ଜି କରି । ଦୁଃଖ ପାଇବାରେ ତନହେଁ ସରି ।
କରଟକ କହି । ଏକଥା କରୂପେ କହ ହେ ସହି । ୧୬୪ ।

ଦମନକ କହେ ହେ ମିତ ଶୁଣ । କାଞ୍ଚନପୁରେ ବକ୍ରମ ରାଜନ ।
ତାହାର ଧର୍ମ ଅଧିକାରି ଥିଲା । କେହି ଭଣ୍ଡାର ବଡ଼ ଦୋଷ କଲା ।
ତା ବୁଝି ବୋଇଲା । ଶୂଳୀ ଦଅ ଭଣ୍ଡାରିକ କହିଲା । ୧୬୫ ।

ତାହା ନଦେଶରେ ନଯୋଗୀ ନରେ । ବାନ୍ଧି ଯେନ ଯାଉଥିଲେ ନଗରେ
କନ୍ଦର୍ପ କେତୁ ନାମରେ ସନ୍ୟାସୀ । ସାଧୁକୁ ଯେବ ସେ ମେଲିଲେ ପସି
ବଧ୍ୟ ଏ ନୁହଇ । ଏମନ୍ତ ବୋଲି ନଷେଧ କରଇ । ୧୬୬ ।

ଶୁଣି ରାଜଲୋକମାନେ କହିଲେ । କାହିଁକି ବଧ୍ୟ ନୁହେ ଏ ବୋଇଲେ
ମୋହର ଦୋଷରେ ମୁ ହେଲାପରି । ଅପଣା ଦୋଷରେ ଅପଣା ମରି
ସେମାନେ ପଚ୍ଛରେ । କରୂପେ ଏକଥା କହ ବସ୍ୱର । ୧୬୭ ।

ପରିବ୍ରାଜକ କହେ ଶୁଣ ତୁମ୍ଭେ । ସିଂହଳ ଦ୍ୱୀପ ଭୂପ ପୂର୍ବେ ଅମ୍ଭେ ।
କନ୍ଦର୍ପ କେତୁ ଯେ ନାମ ଅମ୍ଭର । ଏକକାଳେ ପୋତ ବଣିଜଙ୍କର ।
ମୁଖରୁ ଶୁଣିଛୁ । ଯେ ବୃତ୍ତାନ୍ତ ତୁମ୍ଭ ଅଗେ କହୁଛୁ । ୧୬୮ ।

ଚତୁର୍ଦ୍ଦଶୀରେ କ୍ଷୀର ସମୁଦ୍ରରେ । ଦଣଇ ଏକ ବୃକ୍ଷ ତାହା ତଳେ ।
ମଣି ପଲଙ୍କେ ସର୍ବାଙ୍ଗ ଭୂଷିତ । ବୀଣା ବଜାଇ ଲକ୍ଷ୍ମୀ ପ୍ରାୟେ ସ୍ଥିତ ।
ସେ କନ୍ୟା ଏରୂପେ । ଦେଖିଲୁଁ ତାକୁ ସାକ୍ଷାତ ସ୍ୱରୂପେ । ୧୬୯

ଏମନ୍ତ ମୁହିଁ ତାଙ୍କଠାରୁ ଶୁଣି । ଚଳି ବୋଇତ ଗଲି ସେହିକ୍ଷଣି ।
ପୋତବାହକଙ୍କୁ ସଙ୍ଗତେ ଘେନ । ଦେଖିଲୁଁ ସେ କନ୍ୟା ଉଠିଲୁ ବେନ
ତା ଶୋଭା ଦେଖିଲି । ସେ ବୁଡ଼ି ଗଲା ତା ପଛେ ବୁଡ଼ିଲି । ୧୭୦

ପ୍ରବେଶ ହୋଇଲି କନ୍ୟାର ପୁରେ । ଦେଖିଲି ତାକୁ କନକ ବେଶ୍ମରେ
ବିଦ୍ୟାଧରମାନେ ଅଛନ୍ତି ସଙ୍ଗେ । ସେ ମୋତେ ଗୃହିଁଣ ଦୂରରୁ ରଙ୍ଗେ
କରଣ ଆଦର । ଦୂତକ ପେଷିଲା ମୋର ଗ୍ରମୁର । ୧୭୧ ।

ବହୁତ ପ୍ରକାରେ କହିଲା ଦୂତୀ । କନ୍ଦର୍ପକେଳି ନାମେ ନରପତି ।
ବିଧ୍ୟାଧର ସେ ତାହାର ଦୁହିତା । ରତ୍ନମଞ୍ଜରୀ ଏ ଅବିବାହିତା ।
ସେହିକ୍ଷଣେ ତୁଇ । ଯହିଁ ଗାନ୍ଧର୍ବରେ ବିବାହ ହୋଇ । ୧୭୨

ତାହା ସଙ୍ଗେ କ୍ରୀଡ଼ା କରି ସେଠାରେ । ରହିଲି ଏରୂପେ କଛୁ କାଳରେ
ଏକ ଦିନେ ମୋତେ କନ୍ୟା କହିଲା । ହେ କାନ୍ତ ସର୍ବସ୍ୱ ଭୁଞ୍ଜ ବୋଇଲା
ଏତେକ କରନ୍ତୁ । ଚିତ୍ର ସ୍ୱର୍ଣ୍ଣରେଖାକୁ ନ ଛୁଇଁନ୍ତୁ । ୧୭୩ ।

ଏକଦିନେ ମୁହିଁ କଉତୁକରେ । ସ୍ୱର୍ଣ୍ଣରେଖାରୂପ ଛୁଇଁଲି କରେ ।
ତେଣେ ବିଦ୍ୟାଧର ଚରଣ ଘାତରେ । ଅସି ପଡ଼ିଲି ସୌରାଷ୍ଟ୍ର ଦେଶରେ
ମୁ କରି ସନ୍ତାପ । ପରିବ୍ରାଜକ ହୋଇ କଲି ତପ । ୧୭୪ ।

ତହିଁଉତାରୁ ପୃଥିବୀ ଭ୍ରମଣ । କରୁ କରୁ ହେଲି ଏହି ପତ୍ତନ ।
ଏକ ଦିନେ ଗୋପ ଗୃହେ ଶୋଇଲି । ସେହିଠାରେ ଏହି କର୍ମ ଦେଖିଲି
ସେହି ଗୃହପତି । ବଧୂକୁ ଦେଖିଲା ଦୂତୀ ସଙ୍ଗତ । ୧୭୫ ।

କୋଧ ହୋଇ ତାକୁ ଦଣ୍ଡ ବହୁଣ । ଖମ୍ଭେ ହସ୍ତ ବାନ୍ଧି କଲା ଶୟନ
ଏଥୁଅନ୍ତେ ଭଣ୍ଡାରୁଣୀ ନିଃଶ୍ୱାସ । ପକାଇ କହିଲା ଗୋପୀଙ୍କ ପାଶ ।
ନ ଗଲେ ମରଇ ସେହି ପୁରୁଷ । ତୋର ହେବ ପୁରୁଷ ହତ୍ୟା ଦୋଷ
ଗଲ ତାହାଠାକୁ । ସମ୍ଭାବନା କର ଅଷ ଏଥକୁ । ୧୭୬ ।
ଏଠାରେ ମୁହିଁ ତୋହର ପରାଇ । ଆସିବା ଯାଏ ବନ୍ଧା ହୋଇ ରହି
ଏମନ୍ତ ବୋଲି ସେ କଲେ ସେରୂପେ । ଉଠି ଗଉଡ଼ ବୋଲୁଅଛି କୋପେ
ସମୀପେ ତାହାର । କହି ବଞ୍ଚାଇଲୁଣି ତୋର କେ ଜାର । ୧୭୭ ।
କହି ବେଗେ ନ କହୁଣୁ ତୁ ଯେବେ । ରଜା ଆଗରେ ମୁ କହିବ ତେବେ
ଏମନ୍ତ ବୋଲନ୍ତେ ସେ ତୁନ ହେଲା । କୋପେ ସେ ତାହାର ନାକ କାଟିଲା
ସେଠାରେ ଶୋଇଲା । ଏଥୁଅନ୍ତେ ପୁଣି ଗୋପୀ ଅଇଲା । ୧୭୮
କହଇ ଗୋପୀ ବାର୍ତ୍ତା କ ତୋହର । ଦୂତୀ ବୋଲେ ମୋ ମୁଖ ବାର୍ତ୍ତାହର
ଏଥୁଅନ୍ତେ ଗୋପୀ ବନ୍ଧନେ ରହି । ଦୂତୀ ନାସା ଘେନି ଘରକୁ ଯାଇ
ପୁଣି ପ୍ରକାଳରେ । ଭଣ୍ଡାର କ୍ଷୁର ମୁଠି ମାଗେ ତାରେ । ୧୭୯ ।
ସେହି ତାକୁ କ୍ଷୁର ଗୋଟିଏ ଦେଲା । କପାଇଁ ଗୋଟିଏ ଦେଲୁ ବୋଇଲା
ଏମନ୍ତ ବୋଲି ଭଣ୍ଡାର ସେ କ୍ଷୁର । ପକାଇ ଦେଲା ସେ ଗୃହ ମଧ୍ୟର
ସେ ଡକା ପାଡ଼ିଲା । ବନା ଅପରାଧେ ନାସା କାଟିଲା । ୧୮୦ ।
ଏମନ୍ତ ବୋଲି ଭଣ୍ଡାରୁଣୀ ଗଲା । ଧର୍ମ ଅଧିକାରୀ ଆଗେ କହିଲା ।
ଏଥୁଅନ୍ତେ ଗଉଡ଼ୁଣୀ ଡାକଇ । ଆରେ ଗଉଡ଼ ହୋଇଲୁ କି ବାଇ
ମୁହିଁ ମହା ସତୀ । ମୋତେ ମିଛରେ କରୁଛୁ ଅସତୀ । ୧୮୧ ।
ଆଦିତ୍ୟ ଚନ୍ଦ୍ର ଅନିଳ ସମୀର । ଆକାଶ ଭୂମି ହୃଦୟ ଯେ ଜଳ ।
ମନ ଦିବସ ରାତ୍ରି ସନ୍ଧ୍ୟା ଧର୍ମ । ଏମାନେ ଜାଣନ୍ତି ମନୁଷ୍ୟ କର୍ମ ।
ସତ୍ୟ ହେବ ଯେବେ । ମୋ ନାସିକା ହେବ ଅକ୍ଷତ ତେବେ । ୧୮୨
ଗୋପୀ ଏରୂପେ କହନ୍ତେ ଗୋପାଳ । ଅଇଲା ପ୍ରଦୀପ ଘେନି ସଖଳ ।
ମୁଖ ଅକ୍ଷତ ତାହାର ଦେଖିଲା । ସେହିକ୍ଷଣି ତାର ପାଦେ ପଡ଼ିଲା ।
ପୁଣି ଶୁଣ ରାଇ । ସାଧୁ ଚରିତ କହୁଅଛି ମୁହିଁ । ୧୮୩ ।

ଏହାର ମଳୟ ସମୀପେ ଘର । କହୁ ଉହୁ ସେନ ଘରୁ ବାହାର ।
ବାର ବର୍ଷ ହେଲା ଅଛି ଏହି । ବେଶ୍ୟାଙ୍କ ପିଣ୍ଡାରେ ଶୋଇଲା ଯାହିଁ
ସେଠାରେ କୁଟ୍ଟିମା । ରଖିଛି କାଠ ବେତାଳ ନିର୍ମାଣି । ୧୮୪ ।
ତାହାର ମୁଣ୍ଡରେ ଏକ ରତନ । ଦେଇ କରଛି ସେଠାରେ ଅସନ ।
ଏ ସାଧୁରହି ଲୋଭେ ଅସି କର । ବେତାଳ ମୁଣ୍ଡରୁ ରତନ ହର ।
ସେହି କାଳେ ସ୍ପଷ୍ଟ । ସଂଗ୍ରରେ ବେତାଳ ଧରିଲା ହସ୍ତ । ୧୮୫
ବାହୁ ଦୁଇରେ ଭିଡ଼ିଣ ଧରିଲା । ଏ ସାଧୁ ବହୁ ଅର୍ତ୍ତଧ୍ୱନ କଲା ।
ତଦନ୍ତେ କୁଟ୍ଟିମା ହସି ବୋଲଇ । ମଳୟ ପାଖରୁ ଅସିଛ ଭାଇ ।
ଦିଅ ସବୁ ଧନ । ନ ଦେଲେ ନ ଛାଡ଼ିବ ଏ ଦୁର୍ଜନ । ୧୮୬ ।
ତହିଁ ଉତ୍ତାରୁ ଏ ବହୁତ ଧନ । ତାକୁ ଦେଇ ମାଗୁଅଛି ଭୋଜନ ।
ଏହା ଶୁଣି ରାଜ ପ୍ରଭୁଷମାନେ । ତାହାକୁ ଦଣ୍ଡ ଦେଲେ ସାବଧାନେ
ତେଣୁକରି କହି । ସ୍ୱ ଦୋଷେ ଏମାନଙ୍କର ଏ ହୋଇ ୧୮୭ ।
କରଟକ ଦମନକଙ୍କୁ କହି । ବର୍ତ୍ତମାନରେ କ କରିବା ଭାଇ ।
ଶୁଣି ଦମନକ କ୍ଷଣେ ବଗ୍ୟଇ । କହଇ ସତ୍ରୁ.କଥାକୁ ବସ୍ତାଇ ।
ସ୍ନେହ ଯେଉଁ ରୂପେ । କଲେହିଁ କରିବା ଭେଦ ସେରୂପେ । ୧୮୮
ଯେଉଁମାନେ ଠିକ କର୍ମ ଜାଣନ୍ତି । ସମରେ ଖାଲି ଚିପକୁ ଦେଖାନ୍ତି ।
ଯେରୂପେ ସେରୂପେ ଚତୁର ଜନ । ଅସତ୍ୟକୁ ସତ୍ୟ କରେ ବଚନ
ଏରୂପେ ହୁଅଇ । ବୁଦ୍ଧି ବଳ ଥିଲେ ସବୁ ସାଧଇ । ୧୮୯ ।
ଯେତେବେଳରେ ସେ କାର୍ଯ୍ୟ ପଡ଼ଇ । ସେକାଳେ ଯାହାକୁ ବୁଦ୍ଧି ଦଶଇ
ସେହି ସେ ତରଇ ବିପତ୍ତିମାନ । ଦୁଇ ଜାରରେ ଗୋପିକା ଯେସନ ।
କରଟକ ଶୁଣି । କହେ ଏ କଥାକୁ କହତ ପୁଣି । ୧୯୦ ।
ଦମନକ କହେ ଶୁଣ ହେ ମିତ । ଦ୍ୱାରବତୀ ନାମ ନଗରେ ସ୍ଥିତ ।
କେହି ଗଉଡର ବଧୂ ଅସତୀ । ଗ୍ରାମ ଦଣ୍ଡ ପାଣି ପୁଏ ସଙ୍ଗତି ।
କାଉ ତାର ସଙ୍ଗେ । କରଇ ସେ କ୍ରୀଡ଼ା ମଦନ ରଙ୍ଗେ । ୧୯୧

ବାଣ୍ଟମାନଙ୍କେ ଅଗ୍ନି ତୃପ୍ତି ନୋହି । ଅପଗାରେ ମହୋଦଧିର ନାହିଁ
ସବ ପ୍ରାଣିରେ ଯମ ନୋହେ ତୃପ୍ତ । ପୁରୁଷମାନଙ୍କେ ନାରୀ ତେମନ୍ତ
ନୁହିଇ ସନ୍ତୋଷ । କେତେ କହିବା ତୋତେ ଉପଦେଶ । ୧୧
ବାନମାନ ଯେ ଅକପଟ ମେଧା । ଅସ୍ତ୍ର ଶସ୍ତ୍ର ବିଦ୍ୟା ସମସ୍ତେ ସୁଧା ।
କେହି ନାରୀଙ୍କ ବଶ ନ କରନ୍ତି । ସମସ୍ତ ପଣ୍ଡିତେ କହିଅଛନ୍ତି ।
ମୁ ପୁଣି କହଇ । ଶୁଣ ମିତ ତୁ ଏକ ମନ ହୋଇ । ୧୯୩ ।
ହୋଇଥାଇ କାମ ଶାସ୍ତ୍ର ନିପୁଣ । ବିଦ୍ୟାବନ୍ତ ଯୁବା ଅତି କୁଳୀନ ।
ବହିସମ ଦାତା କପଟେ ବଡ । ସ୍ତ୍ରୀ ସଙ୍ଗ ଭାଷାରେ ଅତି କୁଶଳ ।
ଏତେ ଗୁଣ ଥାଇ । ପତିକି ଛାଡ଼ି ଆନକୁ ଭଜଇ । ୧୯୪ ।
ଦଣ୍ଡ ପାଣି ପୁଏ ତାର ସଙ୍ଗର । ଏକଦିନେ କରୁଥିଲା ବିହାର ।
ସେକ୍ଷଣରେ ଦଣ୍ଡ ପାଣି ଅଇଲା । ସେ ଦେଖି ତାକୁ ଘାଁକୁ ଛପାଇଲା ।
ଦଣ୍ଡ ପାଣି ଯେନ । ବିହାର କଲା ସେ ରମଣି ମଣି । ୧୯୫ ।
ଏହି ସମୟରେ ଅପଣା ବର । ଦଣ୍ଡ ହସ୍ତେ ଧରି ପ୍ରବେଶ ଘର ।
ତାକୁ ଦେଖି ଦଣ୍ଡ ପାଣିକି କହେ । ତୁମ୍ଭେ ଏଠାରୁ ବାହାର ଯାଅ ହେ ।
ଦଣ୍ଡ ହସ୍ତ ହୋଇ । ବାହାର ଯାଅନ୍ତେ ପତି ଦେଖଇ । ୧୯୬ ।
ତା ଦେଖି ଗୋପ ନାରୀଙ୍କ ବୋଲଇ । କନ୍ଦେ ଦଣ୍ଡପାଣି କୁପିତ ହୋଇ ।
ଯାଉଛି କାହିଁକ କହ ତୁ ମୋତେ । ନାରୀ ବୋଲଇ ତା ପୁଅ ନିମିତ୍ତେ
ପୁଅକୁ ମାରୁଛି । ପଳାଇ ସେ ଆମ୍ଭ ଘରେ ପଶିଛି । ୧୯୭ ।
ତାହା ପୁଅକୁ ଲୁଚାଇଛି ମୁହିଁ । ମତେ ପଚାରନ୍ତେ କହିଲି ନାହିଁ ।
ଏମନ୍ତ ବୋଲି ତା ପୁଏ ଦେଖାଇ । ଏହାକୁ ଖୋଜିକୋଧ ହୋଇ ଯାଇ ।
ଦେଖି ତାର ପତି । କହିଲା ଏ କଥା ନୋହେ ଅନୀତି । ୧୯୮ ।
ନାରୀମାନଙ୍କ ଅହାର ଦ୍ୱିଗୁଣ । ବୁଦ୍ଧି ତାହାଙ୍କର ସେ ଚତୁର୍ଗୁଣ ।
ସାହ ତାଙ୍କର ଷଡ୍ଗୁଣ ହୋଇ । କାମ ଇଚ୍ଛା ଅଠ ଗୁଣ ଅଟଇ ।
ଏମନ୍ତ ସେ ବୁଦ୍ଧି । ବିପତ୍ତି ହେଲା କାଳେ ସେ ପ୍ରସିଦ୍ଧି । ୧୯୯ ।

ଶୁଣି କରଟକ କହଇ ପୁଣି । ଏହିରୂପେ ସତ୍ୟ ଏ କଥା ଜାଣି ।
ଏ ଦୁଇ ଜନଙ୍କର ବଡ ସ୍ନେହ । କରୂପେ ଭାଜବ ଏ କଥା କହ ।
ଦମନକ କହେ । ଏଠାରେ ଉପାୟରେ ଅନ୍ୟ ନୋହେ । ୧୦୦

ଉପାୟ ଜଲେ ଯେଉଁ କାର୍ଯ୍ୟ ହୋଇ । ପରାକ୍ରମରେ ତା ସିଦ୍ଧ ନୁହଇ
କାକୀ କନକ ସୂତ୍ର ଉପାୟରେ । ମାଇଲା କୃଷ୍ଣ ସର୍ପକୁ ସତ୍ୱରେ ।
କରଟକ କହ । କହ ଏ କଥା ଦମନକ ଭାଇ । ୧୦୧ ।

ଦମନକ କହେ ଶୁଣ ହେ ମିତ । ଏକ ବୃକ୍ଷରେ କାକ କାକୀ ସ୍ଥିତ ।
ତହିଁରେ ଯେତେକ ଡିମ୍ବ ପାଡ଼ଇ । କୋଟରେ ଥାଇ କୃଷ୍ଣସର୍ପ ଖାଇ
ତାର ପ୍ରତ ଗର୍ଭ । ଖାଇଲା ଆସି କୃଷ୍ଣସର୍ପ ସବ । ୧୦୨ ।
ଏମନ୍ତେ କେତେକାଳ ଗଲା । ଗର୍ଭିଣୀ କାକୀ କାକକୁ କହିଲା ।
ନାଥ କ କରିବ କହ ଉପାୟ । ଆସି ହେଲା ଆମ୍ଭର ବଂଶ କ୍ଷୟ ।
ଏ ବୃକ୍ଷ ଛାଡ଼ିବା । ଚାଲ ଅନ୍ୟ ବୃକ୍ଷେ ବସା କରିବା । ୧୦୩

ଯାହାର ଦୁଷ୍ଟ ଭାର୍ଯ୍ୟା ହୁଅଇ । ଯାହା ମିତ୍ର ଧୂର୍ତ୍ତପଣ କରଇ ।
ଯାହାର ଭୃତ୍ୟ ଉତ୍ତରକୁ ଦେଇ । ସର୍ପ ଯାହାର ଗୃହେ ରହିଥାଇ
ଏ ସମସ୍ତ ଜନ । ଏହାଙ୍କର ନିଶ୍ଚେ ହୁଏ ମରଣ । ୧୦୪ ।

ଏସର୍ପ ଆମ୍ଭର ଅନ୍ତକ ହେଲା । ସନ୍ତତି ନ ରହିବାର ହୋଇଲା ।
କାକ ବୋଲୁଅଛି ଶୁଣଲେ ତୁହି । ଏହା ଅପରାଧ ବହୁତ ସହି ।
ଅଛି ଏକା ମୁହିଁ । ଆଉ ଏଣିକି ମାରିବ ସେ ଅହି । ୧୦୫ ।
କାକୀ କହୁଅଛି ଏ ଅନୁଚିତ । କର୍ମ ସ୍ୱଜନ ବିରୋଧ ନୟୁତ ।
ବଳବନ୍ତ ଜନ ସଙ୍ଗେ ସାହସ । ପ୍ରମଦା ଜନମାନଙ୍କୁ ବିଶ୍ୱାସ ।
ଏ ଯେ ଚାରି କଥା । ମରଣର ଦ୍ୱାର ଏହି ସର୍ବଥା । ୧୦୬ ।

ଏତ ବଳବନ୍ତ ଦୁର୍ବଳ ତୁହି । ତୋର ହସ୍ତରେ ସେ ମରିବ କାହିଁ
କାକ କହୁଅଛି ଶୁଣ ମିତଣି । କାହିଁକି ଶଙ୍କା କରୁଅଛୁ ପୁଣି ।
ନିଶ୍ଚୟ ମାରିବି । ବୁଦ୍ଧିବଳେ କାର୍ଯ୍ୟ ସିଦ୍ଧ କରିବି । ୧୦୭ ।

ଯାର ବୁଦ୍ଧି ଅଛି ବଳ ତାହାର । ବୁଦ୍ଧି ଯାର ନାହିଁ କି ବଳ ତାର ।
ଦେଖ ତୁ ସିଂହ ମହା ବଳବନ୍ତ । ଶଶକ ତାହାକୁ କଲା ନିପାତ ।
  କଙ୍କା ବୋଲେ କହ । ଏକଥା ମୋତେ ଲାଗିଲା ସନ୍ଦେହ । ୧୦୮

କାକ କହେ ଶୁଣ ମନ୍ଦର ଗିରି । ତହିଁରେ ଦୁର୍ଦ୍ଦାନ୍ତ ନାମରେ ହରି ।
ବଧ କରୁଥାଇ ପଶୁମାନଙ୍କୁ । ବହୁତ ମାରଇ ଦେଖିଣ ତାଙ୍କୁ ।
  ସବୁ ପଶୁଗଣ । ଯାଇଣ ତାହାକୁ କଲେ ଜଣାଣ । ୧୦୯ ।

ତୁମ୍ଭ ଆହାରପାଇଁ ଅମ୍ଭେ ନିତ । ଦିନକେ ପଶୁ ଗୋଟିଏ ଦେଉତ ।
ଦେବୁଁ ତୁମ୍ଭଙ୍କୁ ଏହି କଥା ସତ । ତୁମ୍ଭେ ଆଉ ପଶୁ ନ କର ହତ ।
  ଏମନ୍ତ ଶୁଣିଲା । ସେରୂପେ ହେଉ ଅଙ୍ଗୀକାର କଲା । ୧୧୦ ।

ଏଥିଅନ୍ତେ ଦିନେ ଦିନେ ସମସ୍ତେ । କ୍ରମେ ଏକ ପଶୁ ଦିଅନ୍ତି ହସ୍ତେ ।
ଏଥିଅନ୍ତରେ କିଛି ଦିନ ଗଲା । ବୃଦ୍ଧ ଶଶକର ପାଳି ପଡ଼ିଲା ।
  ସେହି ଚିନ୍ତା କଲା । ଅଜ ଆମ୍ଭର ମରିବାର ହେଲା । ୧୧୧ ।

ଜୀବନ ଅର୍ଥରେ ସମସ୍ତ ନର । ରକ୍ଷଣରେ କରୁଥାନ୍ତି ଯତ୍ନର ।
ଯେବେ ହେଲା ମୋର ମରଣ ମୂଳ । ସିଂହକୁ କପାଁ ହେବ ଅନୁକୂଳ ।
  ପଛେ ଯିବ ମୁହିଁ । ଗଲା ତାହାଠାକୁ ବିଳମ୍ବ ହୋଇ । ୧୧୨ ।

ତଦନ୍ତରେ ସିଂହ ତାକୁ ଦେଖିଣ । କ୍ଷୁଧାରେ କୋପେ କହଇ ବଚନ ।
ବିଳମ୍ବେ ଅଇଲୁ କପାଁ ତୁ ଅରେ । ଶଶକ ବୋଲଇ ସିଂହ ଶୁଣରେ
  ମୋ କି ଅପରାଧ । ବାଟେ ଅନ୍ୟ ସିଂହ କଲା ନିଷେଧ । ୧୧୩ ।

ସେହି ମୋତେ ନିୟମ କରାଇଲା । ପୁଣି ଲେଉଟି ଅସିବୁ ବୋଇଲା ।
ତୁମ୍ଭଙ୍କୁ ସେ କଥା କହିବାପାଇଁ । ଅଇଲି ଆଜ୍ଞା ଦିଅ ଯିବ ଯାଇଁ ।
  ଏମନ୍ତ ସେ ଶୁଣି । ସିଂହ କ୍ରୋଧରେ କହୁଅଛି ବାଣୀ । ୧୧୪ ।

ଅରେ ସେ ସିଂହ ଅଛି କେଉଁଠାରେ । ସେଠାକୁ ମତେ ନିଅ ତୁ ସତ୍ୱରେ
ଏହା ଶୁଣି ଶଶକ ତାକୁ ନେଇ । ଗଭୀର କୂପକୁ ଦେଲା ଦେଖାଇ ।
  ସ୍ୱରୂପ ତା ଜଳେ । ଦେଖି କ୍ରୋଧରେ ଡେଇଁ ସିଂହ ମରେ । ୧୧୫

ଏହିହେତୁରୁ ମୁ କହିଲି ବୁଦ୍ଧି । ବଳ ଯାର ଅଛି ସେହି ପ୍ରସିଦ୍ଧି ।
କାକୀ କହୁଅଛି ଶୁଣିଲି ସବୁ । ଏବେ ତାହା କହ ଯାହା କରିବୁ ।
କାକ କହୁଅଛି । ଯାହା କରିବ ସେ ଜାଣିଲି ଅଛି । ୧୯୬ ।

ଏ ବୃକ୍ଷ ସମୀପେ ଏହି କାସାରେ । ସ୍ନାନ କରେ ରାଜ ପୁତ୍ର ପ୍ରାତରେ ।
ଅଙ୍ଗରୁ ଓହ୍ଲାଇ କନକ ସୂତ୍ର । ତୀରେ ଥୋଇଅଛି ଯାଅ ତୁରିତ ।
ଘେନି ତୋ ଥଣ୍ଟରେ । ପକାଇ ଦିଅ ତୁ ସର୍ପ କୋଟରେ । ୧୯୭

କାକ କହିଲା ତାକୁ ଯେଉଁରୂପେ । ସେ କାକୀ କଲା ସେହି ଅନୁରୂପେ
ରାଜ ସେବକେ ସୂତ୍ର ଅନୁସରି । ଗୋଡ଼ାଇ ଦେଖି କାଳସର୍ପ ମାରି ।
ମୁ ତେତେ କହଇ । ଉପାୟରେ ସବୁ କାର୍ଯ୍ୟ ହୁଅଇ । ୧୯୮ ।

କରଟକ କହେ ହେ ମିତ୍ର ଶୁଣ । ଯେବେ ଏରୂପେ କହିଲ ଅପଣ ।
ଯାଅ ତୁ ମଙ୍ଗଳ ହେଉ ତୋହର । ସେ ଯାଇ ପିଙ୍ଗଳକ ସମୀପର ।
ପ୍ରଣାମ କରିଣ । ଶୁଣିମା ହେଉ ଦେବ ସାବଧାନ । ୧୯୯ ।

ଦେବ ସଂଜୀବକ ତୁମ୍ଭଙ୍କୁ ନାଶ । କରିବାକୁ କରିଅଛି ସାହସ ।
ତେଣୁ ଆଇଲି ମୁ ତୁମ୍ଭ ସମୀପ । ବିଚାର କର ଏଥି ଅନୁରୂପ ।
ଯେହ୍ନେ ଭୃତ୍ୟ ମେଁ । ହିତ କହିବାର ତାର ଉଚିତ । ୧୧୦ ।

ବିପତ୍ତିରେ ଉନ୍ମାର୍ଗ ଗମନରେ । କାର୍ଯ୍ୟ ନାଶକାଳେ ଅତିକ୍ରମରେ ।
ଏତେଠାରେ ଯେ ହିତ ଭୃତ୍ୟ ଥାଇ । ନ ପଚାରିଲେ ରାଜାକୁ କହଇ
କି କହିବ ଆଉ । ଶୀଘ୍ର କର କାର୍ଯ୍ୟ ବିଳମ୍ବ ନୋହୁ । ୧୧୯ ।

ରାଜା କେବଳ ଭୋଗର ଭାଜନ । କାର୍ଯ୍ୟ କେବେହେଁ ନ କରେ ରାଜନ
ଯେବେ ରାଜାର କାର୍ଯ୍ୟ ବାଧା ହୋଇ । ତେବେ ସେ ମନ୍ତ୍ରୀଙ୍କ ଦୋଷ ଲାଗଇ
ଦେଖ ଶୁକ୍ର ସମ । ଅମାତ୍ୟମାନଙ୍କର ଏହି ଧର୍ମ । ୧୧୧ ।

ପ୍ରାଣ ପରିତ୍ୟାଗ ଶିର ଛେଦନ । ଅମାତ୍ୟର ଭଲ କଥା ଏ ଜାଣ ।
ସ୍ୱାମୀ ଅଧିକାର ଅମ୍ଭେ କରିବା । ଏହାକୁ ମାରି ରାଜା ଅମ୍ଭେ ହେବା
ଏହା ଯେ କହଇ । ତାକୁ ଛାଡ଼ିବାର ଭଲ ନହଇ । ୧୧୩ ।

ଶୁଣି ପିଙ୍ଗଳକ ଅଦର ହୋଇ । କହ କହିବାକୁ ଅଛ କ ଭାଇ ।
ଦମନକ କହେ ଶୁଣ ରାଜନ । ସଂଜୀବକ ଚେଷ୍ଟା ଦେଖିଲୁଁ ଅନ ।
ମୋହର ନକଟେ । ସ୍ୱାମୀ ବଳ ନନ୍ଦା କରେ ପ୍ରକଟେ । ୧୧୪ ।

ରାଜ୍ୟ ଅଭିଳାଷ କରୁଛ ସେହି । ଶୁଣି ପିଙ୍ଗଳକ ସଭୟ ହୋଇ ।
ଘୌର୍ଯ୍ୟ ହୋଇ ତୁନି ହେଲା ପୁଣ । ଦମନକ କହେ ଶୁଣ ରାଜନ ।
ସବୁ ଅମାତ୍ୟଙ୍କୁ । ଛଡ଼ ଅଧିକାର ଦେଲ ତାହାକୁ । ୧୧୫ ।

ନୃପତ ସେ ଏକା ଜଣକୁ ଯେବେ । ରାଜ୍ୟେ ପ୍ରଧାନ ମନ୍ତ୍ରୀ କରେ ତେବେ
ଅଜ୍ଞାନରୁ ତାର ଗର୍ବ ହୁଅଇ । ଗର୍ବରୁ ସେ ଭେଦ ଭାବ ଜନ୍ମଇ ।
ତାର ସ୍ୱାତନ୍ତ୍ର୍ୟଧୀ । ସ୍ୱାତନ୍ତ୍ର୍ୟ ଇଚ୍ଛା ହେଲେ ନୃପ ବଧି । ୧୧୬ ।

ବଷଲିପ୍ତ ହୋଇ ଥାଏ ଯେ ଭକ୍ତ । ଯାହାର ମୂଳ ହଲଇ ସେ ଦନ୍ତ
ଯେଉଁ ଅମାତ୍ୟ ରାଜଦ୍ରୋହାଶ୍ରିତ । ଏ ତନଙ୍କ ନବାକରଣ କର ।
ଉପାଡ଼ିଲେ ସୁଖ । ନୋହିଲେ ପାଆନ୍ତି ବହୁତ ଦୁଃଖ । ୧୧୭ ।

ଯେଉଁ ରାଜା କରେ ସଚିବାଧୀନ । ଲକ୍ଷ୍ମୀଙ୍କ ପ୍ରୀତି ମନ୍ତ୍ରୀ ବ୍ୟସନ ।
ହେଲେ ଅନ୍ଧ ପ୍ରାୟ ସେହି ରାଜନ । ସଂଗ୍ରହ ବନା କାର୍ଯ୍ୟ ଭାଜନ ।
କେବେହେଁ ନୁହଇ । ଯେବେ ଗଲେ ମାର୍ଗ ପଡ଼ି ମରଇ । ୧୧୮

ସଂଜୀବକ ସବୁ କାର୍ଯ୍ୟେ କାରଣ । ହୋଇ ସ୍ୱେଚ୍ଛାରେ ପ୍ରବର୍ତ୍ତିଛ ପୁଣ
ଲକ୍ଷ୍ମୀଙ୍କ ଇଚ୍ଛା ନ କରବ ଯେହୁ । ସେ ପୁରୁଷ ଅବା ଅଛିଦ କାହୁଁ ।
ଅନ୍ୟ ରମ୍ୟା ନାରୀ । କଏସେ ନ ଚହେଁ ସନ୍ତୋଷ କରି । ୧୧୯ ।

କାର୍ଯ୍ୟରୁ ସ୍ୱେଚ୍ଛା ବ୍ୟବହାର ତାର । ଜାଣିଛ ଯାହା ତୁମ୍ଭ ଇଚ୍ଛା କର
ସିଂହ ବଶ୍ୱରଣ ପୁଣି କହୁଛ । ସଂଜୀବକଠାରେ ମୋ ସ୍ନେହ ଅଛ ।
ଯେବେ ଏରୂପରେ । କରୁଛ ତଥାପି ମୋ ମନ ହରେ । ୧୨୦ ।

ଯେ ପ୍ରିୟଜନ ସେ ଅପ୍ରିୟ କଲେ । ତାହାଠାରେ ପ୍ରୀତ ନ ଯାଏ ଭଲେ
ଅନେକ ଦୋଷଯୁକ୍ତ ଏହ ଦେହ । କାହାର ବଲ୍ଲଭ ନୁହଇ କହ ।
ଦେଖ ବୈଶ୍ୱାନର । ଘର ପୋଡ଼ିଲେ ନାହିଁ ଅନାଦର । ୧୨୧ ।

ଦମନକ କହେ ରାଜନ ଶୁଣ । ତୁମ୍ଭେ କେବଳ ଏ ଦୋଷ କାରଣ
ସ୍ୱତ ମନ୍ତ୍ରୀ ଉଦାସୀନ ଯେ ଜନ । ଏଥିମଧ୍ୟେ ଯାହାଠାରେ ରାଜନ
କରଇ ଆଦର । ସେ ମାନବ ହୋଏ ଲକ୍ଷ୍ମୀସାଗର । ୧୩୨ ।

କହୁଅଛୁ ପୁଣି ହେଦେବ ଶୁଣ । ଅପ୍ରିୟ ପଥ୍ୟ ଯେ ତା ପ୍ରାନ୍ତେ
ବକତା ଶ୍ରୋତା ଅଛୁ ଯେଉଁଠାରେ । ସମ୍ପତ ରଣ୍ଡ ହୋଏ ସେହିଠା
ମୂଳ ମନ୍ତ୍ରୀ ଯେତ । ଅଗନ୍ତୁକଙ୍କୁ ନିଯୁକ୍ତ ନ କର । ୧୩୩ ।

ଯେବେ ମୂଳ ଭୃତ୍ୟ ଦୋଷକୁ ଦେଖି । ଅଗନ୍ତୁକଙ୍କୁ କେବେହେଁ ନ
ଏଥିରୁ ବଡ ଶତ୍ରୁ ଆଉ ନାହିଁ । ରାଜ୍ୟଭେଦକୁ ସେ କାରଣ ହୋ
ଅନୁଚିତ କଲ । ଆମ୍ଭଙ୍କୁ ଘାତ ଯା ତାକୁ ରଖିଲ । ୧୩୪ ।

ସିଂହ କହୁଅଛୁ ଏତ ବଚିଏ । ଯାହାକୁ ଅଭୟ ଦେଇ ବର୍ଦ୍ଧିତ ।
କରଛୁ ସେ ମୋତେ ଦ୍ରୋହ କରଇ । ଦମନକ ଶୁଣି ପୁଣି କହଇ
ଅହେ ଦେବ ଶୁଣ । ଦୁର୍ଜନ ଲୋକର କହୁବା ଗୁଣ । ୧୩୫ ।

ନିତ୍ୟରେ ଦୁର୍ଜନକୁ ସେବା କଲେ । କେବେହେଁ ସେ ପ୍ରିୟ ନୁହଇ ର
ମାଲଯା ଲଗାଇ ଯେତେହେଁ ସେକ । କୁକ୍କୁର ଲାଙ୍ଗୁଡ ନୁହେ ସଳ
ଖଳ ଲୋକ ପ୍ରୀତ । ବୁଝିଲେ ବଷ ବୃକ୍ଷ ପ୍ରାୟ ଖ୍ୟାତ । ୧୩୬

ଯାହାର ପରାଭବ ନ ସହିବ । ନ ପଚ୍ଛରଲେ ତା ହିତ କହିବ ।
ଏକଥା ସାଧୁମାନଙ୍କର ଧର୍ମ । ଏଥୁଁ ଅନ୍ୟଥା ହୋଇଲେ ଅଧର୍ମ ।
ତୁମ୍ଭେ ନ ପଚ୍ଛର । କହିଲ ତୁମ୍ଭର ହିତ ବଚ୍ଛର । ୧୩୭ ।

ପାପକୁ ଯେଉଁଜନ ନିବାରଇ । ସେହି ଲୋକର ସ୍ନେହ ଅଛୁ କହି
କଷ୍ଟପଟରେ ଯେଉଁ କର୍ମ ଦେଖି । ନିର୍ମଳ ସେହି ତାକୁ ବୋଲି ଲେ
ପଛ ଅନୁସର । ଯେ ନାଶ୍ତ ଟଳଇ ସେହି ସେ ନାଶ୍ଵ । ୧୩୮ ।

ସାଧୁମାନେ ଯାକୁ ପୂଜା କରନ୍ତି । ବୁଦ୍ଧିମନ୍ତ ବୋଲି ତାକୁ ଜାଣନ୍ତି ।
ଯେଉଁ ଲକ୍ଷ୍ମୀ ଗଦ ହେତୁ ନୁହଇ । ସେହି ତାକୁ ଲକ୍ଷ୍ମୀ ଲୋକ ଦୋ
ଯେ ନିଷ୍ଟୃହ ହୋଇ । ସେହି ତାକୁ ସୁଖୀ ଲୋକ କହଇ । ୧୩

ାଠାରେ କିଛି କପଟ ନାହିଁ । ସେହି ମିତ୍ରକୁ ମିତ୍ର ବୋଲି କହି ।
ମାନଙ୍କୁ ଯେହୁ ଜଣାଇ । ସଂସାରେ ସେହି ପୁରୁଷ ବୋଲାଇ ।
ମୋହୋର କି ଦୋଷ । ସଂଜୀବକଙ୍କୁ ଅଗ୍ର କରି ପୋଷ । ୧୪୦ ।
ଯେବେ କାମ ଅଶକ୍ତ ହୋଇ । କରିବା କର୍ମ କାର୍ଯ୍ୟ ନ ଗଣଇ
ଗଜ ପ୍ରାପ୍ତ ସେହି ହୁଅଇ । ଆପଣା ମନକୁ ଗୃହିଁ କରଇ ।
ତହିଁ ଅତି ମାନ । କରି ପଡଇ ସେ ଶୋକେ ବହନ । ୧୪୧

ତେବେଲେ ହୁଏ ଏମନ୍ତ କୃତ୍ୟ । ତେତେବେଳେ କହେ କର୍ମ ଏ ଉତ୍ୟ
ଣା ଦୋଷ ବୋଲି ନ ଗଣଇ । ଶୁଣି ପିଙ୍ଗଳକ ମନେ ଭାବଇ ।
ପରର ବଚନ । ଶୁଣି ପରଦଣ୍ଡ ନ କରେ ଜନ । ୧୪୨ ।

ଣା ମନରେ ବିଚାର କରି । ବଧ୍ୟ କି ପୂଜ୍ୟ ତା ବିବେକ ଧରି ।
। ଦୋଷକୁ ନିଶ୍ଚୟ ନ କରି । ଯେବେ ଅନୁଗ୍ରହ ନିଗ୍ରହ କରି ।
ସର୍ପ ମୁଖେ କର । ଦେଲେ ଯେସନେ ନାଶ ହୁଅଇ ନର । ୧୪୩ ।

କୁ ମନେ ବିଚାରି ରାଜନ । ପ୍ରକାଶ କରିଣ କହେ ବଚନ ।
ବେ କିରୂପେ ସଂଜୀବକ ଯିବ । କରଟକଙ୍କୁ ଏହା ପଚାରିବ ।
ଦମନକ କହି । ଦେବ ଏକଥା ଏରୂପେ ନୁହଇ । ୧୪୪ ।

ରୂପେ ହେଲେ ମନ୍ତ୍ରଭେଦ ହୋଇ । ଏକଥା କେବେହେଁ ଉଚିତ ନୋହି
ବୀଜ ଯତ୍ନେ ରକ୍ଷା କରିବ । ଯେରୂପେ ତାହା କାହିଁ ନ ଫିଟିବ ।
ଲସ ଯେବେ ଫାଟଇ । ଫାଟିଲେ ପୁଣ ଅଙ୍କୁର ନୁହଇ । ୧୪୫ ।

ଏଁ ଜନର ଦୋଷ ଦେଖିଥାଇ । ପୁଣି ତାହା ଦୋଷ କ୍ଷମା କରଇ ।
ବେ ତାହା ସଙ୍ଗେ ପ୍ରୀତି କରିବ । ତେବେ ସେ କାର୍ଯ୍ୟ ଅନୁଚିତ ହେବ
ଭୃତ୍ୟଙ୍କୁ କହିବା । କହିଲେ ଭୃତ୍ୟଙ୍କୁ ଅମୃ ଦା ନବା । ୧୪୬ ।
ର ଯେଉଁ ମିତ୍ର ଦୋଷକୁ ଦେଖି । ପୁଣି ତାହା ସଙ୍ଗେ ପ୍ରୀତି କ ଯୋଷି
ଜନ ତା ସଙ୍ଗେ ପ୍ରୀତି କରଇ । ସେ ଅବଶ୍ୟ ମୃତ୍ୟୁ ଦ୍ୱାର ଭଜଇ ।
ଅଶ୍ୱତରୀ ପ୍ରାୟେ । ସେ ଯେରୂପେ ଗର୍ଭ ପାଇଲେ ହୋଏ । ୧୪୭

ଶୁଣି ସିଂହ ପୁଣି କହେ ବଚନ । ସେ କ ଥମ୍ ସଙ୍ଗେ କରବ ରଣ ।
ସେ ଥିଲ କ କରିବ ଅସମର୍ଥ । ତା ସଙ୍ଗେ କଳି କରିବାର ବ୍ୟର୍ଥ ।
    ଦମନକ କହ । ପିଙ୍ଗଳକ ବଚନକୁ ନ ସହ । ୧୪୮ ।
ଜୀବର ଧର୍ମ ଯେ ଦେହର ଧର୍ମ । ଏହି ଦୁହେଁଟି ବୁଦ୍ଧି ପରାକ୍ରମ ।
ଏ ଦୁହିଙ୍କି ଜାଣି କାର୍ଯ୍ୟ କରବ । ନ ଜାଣି କଲେ ଅବଶ୍ୟ ମରବ ।
    ଦେଖ ଟିଟ୍ଟିଭକୁ । ବ୍ୟାକୁଳ କଲା ସେତେ ସମୁଦ୍ରକୁ । ୧୪୯ ।
ରାଜା ପଚାରିଲ୍ ଏକଥା କହ । ଶୁଣିତ ମତେ ଲାଗିଲ୍ସ ସନ୍ଦେହ ।
କେମନ୍ତ ସୋଇପଇ ଯେତେ ଅନ୍ତର । ତେତକ ଟିଟ୍ଟିଭର ସମୁଦ୍ରର ।
    ଏ ଅଂଶେ ଭାବତ । କାର୍ଯ୍ୟ କରୁପେ ହେଲ କହ ମୋତ । ୧୫୦ ।
ଦମନକ କହେ ସମୁଦ୍ରତୀରେ । ଟିଟ୍ଟିଭ ଦମ୍ପତି ନିବାସ କରେ ।
ଥରେ ଯେ ଟିଟ୍ଟିଭୀ ପ୍ରସବ କାଳେ । କହଇ ଭର୍ତ୍ତାକୁ ଅତ ବିକଳେ ।
    ଏଥୁଁ ଅନ୍ୟ ସ୍ଥାନ । ଖୋଜ ପ୍ରସବ କରବ ବହନ । ୧୫୧ ।
ଟିଟ୍ଟିଭ କହଇ ଟିଟ୍ଟିଭୀ ଶୁଣ । ନିର୍ଭୟ ଏ ପ୍ରସବଯୋଗ୍ୟ ସ୍ଥାନ ।
ଶୁଣି ଟିଟ୍ଟିଭୀ ସ୍ୱାମୀକି କହଇ । ଲହରୀ ବ୍ୟାପ୍ତ ଏହି ସ୍ଥାନ ହୋଇ ।
    ଟିଟ୍ଟିଭ କହଇ । ମୁ କ ଅସହାୟ ହୋଇଛି ସହି । ୧୫୨ ।
ଏହିଠାରେ ମୁହିଁ କରବ ଗୃହ । ସମୁଦ୍ର ସଙ୍ଗତେ କରି ବିଗ୍ରହ ।
ଟିଟ୍ଟିଭୀ ହସିଣ କହଇ ବାଣୀ । ସିନ୍ଧୁର ତୋର ବଳ କ ନ ଜାଣି ।
    ଏ କ କହିବାର । ତାର ତୋହର ବହୁତ ଅନ୍ତର । ୧୫୩ ।
ମୋହର ଦୁଃଖ ଜାଣିବାରେ ମୁହିଁ । ସମର୍ଥ ହେବ ଏମନ୍ତ ଯେ କହ ।
ଏରୂପରେ ହୋଇ ବୁଦ୍ଧି ଯାହାର । ପ୍ରଳୟରେ ନାଶ ନାହିଁ ତାହାର ।
    ଏମନ୍ତ କହିଲ । ସ୍ୱାମୀ ବାକ୍ୟେ ସେଠାରେ ପ୍ରସବିଲ । ୧୫୪ ।
ଏଥୁ ଅନନ୍ତରେ ସେ ପାରାବାର । ଡିମ୍ବମାନଙ୍କୁ ହରିଲା ତାହାର ।
ଟିଟ୍ଟିଭୀ ପୁଣି ଶୋକେ ଅର୍ତ୍ତ ହୋଇ । ଭର୍ତ୍ତାକୁ କହଇ ବିକଳ ହୋଇ
    ବଡ ଦୁଃଖ ହେଲା । ସମୁଦ୍ର ଅମ୍ଭ ଡିମ୍ବ ସବୁ ନେଲା । ୧୫୫ ।

ଟିଟ୍ଟିଭ କହେ ଟିଟ୍ଟିଭିକ ଗୃହଁ । ପ୍ରିୟେ ଦୁଃଖ କରୁଅଛୁ କପାଇଁ ।
ଏତେ ବୋଲି ପକ୍ଷୀମାନଙ୍କୁ ଘେନ । ଗରୁଡ଼ ସମୀପ ଗଲା ଶକୁନ ।
ସେ ସବୁ ଚଢ଼ଇ । ଗରୁଡ଼ ଆଗେ କଲା ନବେଦଇ । ୧୫୬ ।
ଶୁଣି ଗରୁଡ଼ ପ୍ରଭୁ ନାରାୟଣ । ସୃଷ୍ଟି ପାଳନ ସଂହାର କାରଣ ।
ସ୍ମରଣ କହଲେ ସିନ୍ଧୁକୁ ଡାକ । ତୁମ୍ଭେ ପକ୍ଷିଙ୍କି ଦୁଃଖ ଦେଲ ଏ କ ।
ପ୍ରଭୁଠାରୁ ଶୁଣି । ଟିଟ୍ଟିଭ ଡିମ୍ବ ଦେଲେ ସେହିକ୍ଷଣି । ୧୫୭ ।
ସେ ଘର କ୍ଷୁଦ୍ର କ କରବ ବୋଲି । ତୁମ୍ଭେ କହଲାକୁ ଏହା କହିଲି ।
ଶୁଣି ରଜା କହେ ସେହି ବୃଷଭ । ଜାଣିମା କଲ୍ପେ ମୋତେ ମାରବ ।
ଦମନକ କହେ । ମାରବା ଚିହ୍ନକୁ କହଦେବା ହେ । ୧୫୮ ।
ଯେବେ ସେ ଶୃଙ୍ଗ ଅଗ୍ର ନମ୍ର କର । ଟେକ ଲାଙ୍ଗୁଳ ଅଶ୍ରିମ ହେ ହର ।
ଚକ୍ଷୁ ଉପରି କର୍ଣ୍ଣ ଟେକ ଥିବ । ମାରବାର ଚିହ୍ନ ତେବେ ଜାଣିବ ।
ଏଥିଅନନ୍ତରେ । ଦମନକ ଗଲା ସେ ଖରତରେ । ୧୫୯ ।
ସଂଜୀବକକୁ ଦୂରରୁ ଦେଖିଲା । ମନ୍ଦ ମନ୍ଦ ହୋଇ ନକଟେ ହେଲା ।
ମ୍ଳାନ ମୁଖ ହୋଇ ତାକୁ ରହିଲା । ତାହାକୁ ଦେଖି ବଳଦ କହଲା ।
ସେ ଆଦର କର । ତୁମ୍ଭର କୁଶଳ ବୋଲି ପଚ୍ଚର । ୧୬୦ ।
ଦମନକ କହେ ଶୁଣ ହେ ଭାଇ । ସେବକ ଲୋକର କୁଶଳ କାହିଁ ।
ପରାଧୀନ ଯେଉଁ ସମ୍ପତ୍ତି ହୁଏ । ସେହି ସମ୍ପତ୍ତି ସର୍ବଦା ନ ରହେ ।
ଜୀବନର ଆଶ । ନାହିଁ ତାର ଯେହୁ ରାଜାର ଦାସ । ୧୬୧ ।
ଧନ ହେଲେ କାହାର ଗର୍ବ ନୋହେ । ସଂସାରେ ବପତ୍ତି କାହାର ରହେ
ନାରୀ କାହାର ମନ ନ ହରଇ । ରାଜାମାନଙ୍କର କେ ପ୍ରିୟ ହୋଇ ।
କାଳର ବଶକୁ । ନ ଯାଇଛି କଏ କହ ତାହାକୁ । ୧୬୨ ।
ମାଗିବା ଲୋକରେ କେବା ଆଦର । ଯେହୁ ପଡ଼ଇ ଦୁର୍ଜ୍ଜନ ସଙ୍ଗର ।
ତାହାର କୁଶଳ କେବେହେଁ ନୋହି । ଏହା ଶୁଣି ସଂଜୀବକ କହଇ ।
ଦମନକ ମିତ । କହଲ କେ ପୁଣି ମୋତେ କହିତ । ୧୬୩ ।

ଦମନକ କହେ ଶୁଣ ହେ ମିତ । ଯଦି ତୁମ୍ଭ ଅବଶ୍ୟ ହେଲ ଜାତ ।
ସମୁଦ୍ରେ ବୁଡ଼ିଯାଏ ଯେଉଁ ଜନ । ସେ ଦୈବରୂପେ ସର୍ପ ଅବଲମ୍ବନ ।
କରି ନ ଛାଡ଼ଇ । ପ୍ରାଣ ଗଲେ ପୁଣି ନ ଧରଇ । ୧୬୪ ।

ସେହିରୂପରେ ହୋଇଅଛି ଭ୍ରମ । ଏ କଥାତ ହେଲା ଅତି ବିଷମ ।
କହିଲେ ରାଜାର ବିଶ୍ୱାସ ଯିବ । ନ କହିଲେତ ବାନ୍ଧବ ମରିବ ।
ମୁହିଁ କି କରିବ । ଦୁଃଖ ସମୁଦ୍ରେ ପଡ଼ି କେଉଁଣେ ଯିବ ।

ଏମନ୍ତ କହି ସେ ଦୀର୍ଘ ନିଶ୍ୱାସ । ଛାଡ଼ିଲା ସେଠାରେ କଲା ନିବାସ ।
ସଂଜୀବକ କହେ ତୁମ୍ଭ ମନରେ । ଯେ ଅଛି ତା କପଟ ନ କହ ମୋରେ
ଦମନକ କହି । ରାଜା ବିଶ୍ୱାସକୁ ନ କହେ କେହି । ୧୬୬ ।

ଯେବେହେଁ ଶାସ୍ତ୍ରରେ ଏମନ୍ତ ଅଛି । ବିଶ୍ୱାସରେ ତୁମ୍ଭ ପାଶେ ଅଛିତ୍ରି
ଯେ ଜନ କରେ ପର ଉପକାର । ଅବଶ୍ୟ ସ୍ୱର୍ଗରେ ନିବାସ ତାର ।
ସ୍ୱର୍ଗକୁ ପାଇବ । ଏହିହେତୁରୁ ତୋ ହିତ କହିବ । ୧୬୭ ।

ଏ ରାଜା ତୋହଠାରେ ଅନିର୍ମଳ । ହୋଇ ବୋଲେ ବଳଦକୁ କି ଫଳ
ଏହାକୁ ମାରି ଆପଣାର ଭୃତ୍ୟ—ମାନଙ୍କୁ ତୃପ୍ତି କରାଇବ ସତ୍ୟ ।
ଏମନ୍ତ ବୋଲଇ । ସଂଜୀବକ ଶୁଣି ବିଷଣ୍ଣ ହୋଇ । ୧୬୮ ।

ଦମନକ କହେ ହେ ମିତ୍ର ଶୁଣ । ବିଷାଦକୁ ଅବା କେଉଁ କାରଣ ।
ଏକାଳେ ଯେଉଁ କାର୍ଯ୍ୟ ତାହା କର । ପୁଣି ସଂଜୀବକ କ୍ଷଣେ ବିଚାର
କରିଣ କହିଲା । ଏ କଥା ମନକୁ ମୋର ଅଇଲା । ୧୬୯ ।

ଯେବେ ଅତି ଯୋଗ୍ୟ ହୋଇଣ ଥାଇ । ସେ ଯେବେ ଦୁର୍ଜ୍ଜନ ସଙ୍ଗତ ହୋଇ
କୃପଣଠାରେ ଥାଇ ଯେଉଁ ଧନ । ଶୀର ସମୁଦ୍ରେ ବର୍ଷେ ଯେଉଁ ଘନ ।
କେହି ସେ ନୁହନ୍ତି । ସମସ୍ତେ ଅଯୋଗ୍ୟ ତଳେ ଯାଆନ୍ତି । ୧୭୦ ।

ମନେ ବିଚାରେ ଏଥିରେ କି ଅବା । ବ୍ୟବହାରରେ ନଷ୍ଟସ୍ୱ କରିବା ।
ଯେଉଁ ହେତୁରୁ ସେ କେହି ଦୁର୍ଜ୍ଜନ । ଅତଏବ ଶୋଭାରେ ହୋଏ ଭଞ୍ଜନା
ଯେମନ୍ତ ଅଞ୍ଜନ । ଯମଦାଣ୍ଡେତନେ ହୋଏ ଶୋଭନ । ୧୭୧ ।

ନିମିତ୍ତ ଦେଖି ଯେ କୋପ କରଇ । ନିମିତ୍ତ ଗଲେ ସେ ପ୍ରସନ୍ନ ହୋଇ ।
କାରଣ ନ ପାଇ ଯା ମନେ ଦ୍ୱେଷ । ତ ହାକୁ କେ କରିବ ପରିତୋଷ
କାରଣ ନ ଥାଇ । ଦ୍ୱେଷ କଲ୍ଲ ଯେ ପ୍ରତୀକାର ନାହିଁ । ୧୭୨ ।

ଏମନ୍ତ ବଚନ ପ୍ରକାଶ କରି । କହନ୍ତି ସଂଜୀବକ ହସ୍ତ ଧରି ।
କ କଲି ମୁହିଁ ରଜା ଅପକାର । ନ ହିଁ ଅବା ଏ ସ୍ୱଭାବ ରଜାର ।
ଦମନକ କହି । ଅକାରଣେ ଦ୍ୱେଷ ରଜାର ହୋଇ । ୧୭୩ ।

ଯେତେ ଉପକାର କଲେ ରଜାକୁ । ଦ୍ୱେଷରେ ନାଶ କରଇ ତାହାକୁ
ସାକ୍ଷାତରେ କେହି କରନ୍ତି ଦୋଷ । ତାହାଠାରେ ରଜା ବଡ ସନ୍ତୋଷ
ଏକବିଧ ମନ । ନୋହେ ଏଣୁ ବଶ୍ୟ ଭୂପାଳ ଜନ । ୧୭୪ ।

ନାନାବିଧ ହୋଏ ରଜାର ମନ । ଏଣୁ ତାର ସେବା ଅତି ଗହନ ।
ଯେଉଁ ଜନମାନେ ଯୋଗ ସାଧନ୍ତି । ରଜା ସେବାକୁ କେହି ନ ପାରନ୍ତି
ଏ ଯେ ସେବା ଧର୍ମ । କର୍ମମାନଙ୍କରେ ପରମ କର୍ମ । ୧୭୫ ।

ଖଳମାନେ ଗୁଣ ଘାତ କୁଅନ୍ତି । ରୋଗରେ ସୁଖକୁ ନାଶ କରନ୍ତି ।
ଯେସନେ ଗନ୍ଧବନ୍ତ ଚନ୍ଦନବନ । ସର୍ପ ଥିବାରୁ ଯେ ଅଗମ୍ୟ ସ୍ଥାନ ।
ଜଳରେ କମଳ । କୁମ୍ଭୀର ଥିବାରୁ ହେଲା ବିଫଳ । ୧୭୬ ।

ଏ ଯେଉଁ ସ୍ୱାମୀ ବଚନ ମଧୁର । ହୃଦୟ ଏହାର ବିଷ ପ୍ରକାର ।
ମୁହିଁ ଜାଣିଲି ଏ ରଜା ଦୁର୍ଜନ । ଦୁର୍ଜନର ଚିହ୍ନ ଦେଖି ନୟନ ।
ମୁଁ କହିବ ଶୁଣ । ଦୁର୍ଜନର ହୋଏ ଯେତେ ଲକ୍ଷଣ । ୧୭୭ ।

ଦୂରୁ ହସ୍ତ ତୁଳି ଠେକ ଡାକଇ । ଅଶ୍ରୁପୂର୍ଣ୍ଣ ନେତ୍ର ହୋଇଥାଇ ।
ଅର୍ଦ୍ଧାସନ ଛାଡ଼ି ବସ ବୋଲଇ । ବଡ଼ କରି ଆଲିଙ୍ଗନ କରଇ ।
ଯତ୍ନରେ କୁଶଳ । ହେ ଇଥାନ୍ତି ମନେ କପଟ ଛଳ । ୧୭୮ ।

ବାହାରେ ମଧୁର ବଚନ କହି । ଅନ୍ତରେ ମାସ୍ତୁରେ ଅତୁଳ୍ୟ ହୋଇ ।
ଏ ଯେଉଁ ନୂତନ କପଟ ବିଧି । ଦୁର୍ଜନଠାରେ ଏ ହୋଇଛି ସିଦ୍ଧି ।
କେବଳ ଧରମ । ଜାଣଇ ଦୁର୍ଜନ ଲୋକର ମର୍ମ । ୧୭୯ ।

ଦୁସ୍ତର ସମୁଦ୍ର ତରଣେ ପୋତ । ଅନ୍ଧକାରଠାରେ ଦୀପ ଯେମନ୍ତ ।
କବାଟ ସ୍ଥଳେ କଉଛୁ ବ୍ୟଞ୍ଜନ । ଅଙ୍କୁଶରେ ଗଜ ବଶୀକରଣ ।
ଏରୂପେ ବିଧାତା । କଉନାହିଁ ଯାର ଉପାୟ ଚିନ୍ତା । ୬୮୦ ।

ଏ ସଂସାରେ ନାହିଁ ସେପରି କେହି । ଦୁର୍ଜ୍ଜନ ମନ ହରଣ ସେ ବହି ।
ଉଦ୍ୟମ କରିବାରେ ଅଶକତ । ଏହା ମୁ ଜାଣିଛୁ ନିଶ୍ଚୟ ସତ ।
ସଂଜୀବକ କହି । ଶସ୍ୟ ଭକ୍ଷଣରେ ସମର୍ଥ ମୁହିଁ । ୬୮୧ ।

ଏ ଛନ୍ଦୁଠାରେ ଏମନ୍ତ ବଚ୍ଚର । କାହିଁକି ସିଂହ ସେ କଲା ପ୍ରଚ୍ଚର ।
କେହି ଖଳ ଯାଇ ତାଠାକୁ ମୋର । ଉପରେ କ୍ରୋଧ କଲା ଏ ବିକାର ।
ରାଜା ଚିତ୍ତ ଭେଦ । ହୋଇଲେ ସର୍ବଦା ହୁଅଇ ଖେଦ । ୬୮୨ ।

ରାଜାର ଚିତ୍ତ ମନ୍ତ୍ରୀଠାରେ ଯେବେ । କଦାଚିତ ନିର୍ମଳ ନୋହେ ତେବେ ।
ସ୍ଫଟିକ ବଳୟ ପ୍ରାୟ ସମାନ । କେବେହେଁ କରି ନ ପାରଇ ଜନ ।
ରାଜ ମନ୍ତ୍ରୀ ମନ । ଫାଟିଲେ କେବେହେଁ ନୋହେ ଯୋଡଣ । ୬୮୩

ବଜ୍ର ରାଜତେଜ ଦୁହେଁ ସମାନ । ପଡିଲେ ହୁଅଇ ଭୟ ଜନନ ।
ବଜ୍ର ଯେ ଏକସ୍ଥାନରେ ପଡଇ । ରାଜତେଜ ସବୁ ସ୍ଥାନେ ଚାଲଇ ।
ବଜ୍ରରୁ ଅଧିକ । ହୁଏ ରାଜତେଜ ପ୍ରତ୍ୟକ୍ଷେ ଦେଖ । ୬୮୪ ।

ସେହି ହେତୁରୁ ସଂଗ୍ରାମେ ମରଣ । ଉଚିତ କରିବାର ଅଣ୍ଣପୂଣ ।
ତାର ଆଜ୍ଞା ପାଳନ ଅନୁଚିତ । ମଲେ ସ୍ୱର୍ଗକୁ ଯିବି ମୁ ନିଶ୍ଚିତ ।
ଯୁଦ୍ଧରେ ସେ ଯେବେ । ମରିବି ସୁଖ ପାଇବି ମୁ ତେବେ । ୬୮୫ ।

ରଣରେ ମରି ସ୍ୱର୍ଗକୁ ଯିବାର । ଶତ୍ରୁକୁ ମାରି ସୁଖ ପାଇବାର ।
ଶୂରମାନଙ୍କର ଏ ଦୁଇ ଗୁଣ । ଜଗତରେ ନାହିଁ ତାହାର ଜାଣ ।
ଯେ ଯୁଦ୍ଧର କାଳ । କହିବା ତାହା ଶାସ୍ତ୍ରର ବଚ୍ଚରି । ୬୮୬ ।

ଯୁଦ୍ଧ ନ କଲେ ନିଶ୍ଚେ ମୃତ୍ୟୁ ହେବ । ଯୁଦ୍ଧ କଲେ ଅବା ପ୍ରାଣ ରହିବ ।
ଯେଉଁ କାଳରେ ଏ ସନ୍ଦେହ ହୋଇ । ସେହି ଯୁଦ୍ଧକାଳ ଶାସ୍ତ୍ରରେ କହି ।
ସଂଜୀବକ ପୁଣି । ଦମନକକୁ କହୁଅଛୁ ବାଣୀ । ୬୮୭ ।

କହି ମିତ୍ର ତୁମ୍ଭଠାରୁ ଶୁଣିବ । କେଉଁରୂପେ ସେ ମାରିବ ଜାଣିବ ।
ଦମନକ ପୁଣି କହଇ ଶୁଣ । ଯେବେ ସେ ଟେକି ଥିବ ଦୁଇ କର୍ଣ୍ଣ ।
ଲାଙ୍ଗୁଳ ଟେକିବ । ତୁଣ୍ଡ ଆଁ କରି ଧାଇଁ ଆସିବ । ୮୮ ।
ଶରୀର ତରଣେ ଯେ କ୍ଷେପି ଆସିବ । ଦନ୍ତ କଟ କଟ କରୁଣ ଥିବ ।
ଯଡ଼ି ମଟ ମଟ କରି ଚାହିଁବ । ମେଘ ଘଡ଼ ଘଡ଼ି ପ୍ରାୟ ଗର୍ଜିବ ।
ଏରୂପ ଦେଖିବୁ । ତୁ ଆପଣାର ଶକ୍ତି ଦେଖାଇବୁ । ୮୯ ।
ବଳବନ୍ତର ଲୋକ ହୋଇ ଥାଇ । ତେଜ ନ ଥିଲେ ପରାଭବ ପାଇ
ଦେଖ ଅଗ୍ନିରେ ଯେତେ ତେଜ ଥାଇ । ଲୋକ ତହିଁରେ ପାଦ ନ ପକାଇ
ଯେବେ ତେଜ ଯାଇ । ନିର୍ଭୟେ ଭସ୍ମେ ଲୋକ ପାଦ ଦେଇ । ୯୦
ଗୁପ୍ତ କରି ଯେବେ ଏହୁ ବିଚାର । କରିବୁ ତେବେ ତୁ ହୋଇବୁ ପାର
ନାହିଁ ଯେବେ ଏ ବିଚାର ପ୍ରକାଶ । ହେବ ତୁମ୍ଭେ ଅମ୍ଭେ ହୋଇବା ନାଶ
ଏରୂପେ କହିଲା । କରଟକର ସମୀପକୁ ଗଲା । ୯୧ ।
କରଟକ କହେ ଦୁହିଙ୍କ ଭେଦ । ହେଲା କି ନୋହିଲା ଯା'ଉ ମୋ ଖେଦ
ଦମନକ କହେ ଦୁହିଙ୍କ ମନ । ପରସ୍ପରରେ ହେଲା ବିପଟନ ।
କରଟକ କହି । ଏକଥାରେ କିଛି ସଂଦେହ ନାହିଁ । ୯୨ ।
ଦୁର୍ଜ୍ଜନ ଲୋକର କେ ପ୍ରିୟ ହୋଇ । ମାଇଲେ କେ ଅବା କ୍ରୋଧ ନୁହଇ
ଧନ ପାଇ ତୃପ୍ତ ନୋହେ କାହାର । କାର୍ଯ୍ୟରେ କେହୁ ନୁହଇ ଉଦାର
ସାଧୁଜନ ହୋଇ । ଦୁର୍ଜ୍ଜନ ବଚନେ ଖଳ ହୁଅଇ । ୯୩ ।
ଆପଣା କାର୍ଯ୍ୟ ନିମିତ୍ତରେ ଧୂର୍ତ୍ତ । ପଣ୍ଡିତ ଜନକୁ କରେ ଦୁର୍ବୃତ୍ତ ।
ଦହନ ଯାହାର ସଙ୍ଗେ ମିଶଇ । ସେହିକ୍ଷଣି ତାକୁ ଭସ୍ମ କରଇ ।
ସେରୂପେ ଦୁର୍ଜ୍ଜନ । ସଂସର୍ଗରେ କରେ ଆତ୍ମା ସମାନ । ୯୪ ।
ଏଥୁ ଅନ୍ତେ ଦମନକ ରାଜନ । ସମୀପକୁ ଯାଇ କହେ ବଚନ ।
ଦେବ ସଂଜୀବକ ରାଜନ ଦ୍ରୋହୀ । ଅଛୁ ବସି ତୁମ୍ଭେ ସଜ ହୋଇ ।
ଏମନ୍ତ କହିଲା । ତାକୁ ମାରଣରୂପ କରାଇଲା । ୯୫ ।

ସିଂହର ଉଦ୍ୟମ ବୃଷ ମାରଣେ । ଅପି ସଂଜୀବକ ଦେଖି ସେ କ୍ଷଣେ ।
ଆପଣା ପରାକ୍ରମ ଦେଖାଇଲା । ତଦନ୍ତେ ଦୁହିଙ୍କର ଯୁଦ୍ଧ ହେଲା ।
ସେହି ସଂଜୀବକ । ସିଂହ ମାରନ୍ତେ ଗଲା ଯମ ଲୋକ । ୨୧୫ ।
ଏଥୁଅନ୍ତେ ପୁଣି ସିଂହ ରାଜନ । ଶ୍ରମ ହର କହେ ଶୋକେ ବଚନ ।
ପାପ କର୍ମ ମୁହିଁ କଲି ଦାରୁଣ । କର୍ମ ନାହିଁ ମୋର ନରକେ ସ୍ଥାନ ।
ପରୁ ରାଜ୍ୟ ଭୋଗ । କରବ ହେଲା ମୋର ପାପ ଯୋଗ । ୧୧୬
ପୁଣି ବୁଦ୍ଧି ଥାଇ ଯେ ଭୃତ୍ୟଜନ । ପୃଥିବୀ ଏକ ଦେଶ ଏ ସମାନ ।
ଭୃତ୍ୟ ନାଶ ନୃପ ମରଣ ସମ । ଭୂମି ନାଶ ଯେ ଏଥୁ କଷ୍ଟ କମ !
ଗୁଣବନ୍ତ ଭୃତ୍ୟ । ନ ମିଳଇ ମିଳେ ଭୂମି ବହୁତ । ୨୧୭ ।
ଦମନକ କହେ ଶୁଣ ରାଜନ । ଏ କି କଥା ତୁମ୍ଭେ କର ବେଦନ ।
ଶତ୍ରୁ ମାରି କପାଁ ସନ୍ତାପ କର । ରାଜାମାନଙ୍କର ଏହି ବେଭାର ।
ଯେହୁ କେହି ହୋଏ । ରାଜଦ୍ରୋହୀ ଯେ କେବେହେଁ ନ ରହେ । ୨୧[illegible]
ପିତା ହେଉ ଅବା ଯଦ ବା ଭାଇ । ପୁତ୍ର ଅବା ହେଉ ସୁହୃଦ ହୋ[illegible]
ପ୍ରାଣକୁ ପାଣ୍ଡବେ ଯେବେ ଏମାନେ । ଏହାଙ୍କୁ ମାରେ ରାଜା ସାବଧା[illegible]
ଆପଣା ଭଲରେ । ଯେବେ ଇଚ୍ଛା ଥାଇ ରାଜା ମନରେ । ୨୧୯
ଧର୍ମ ଅର୍ଥ ତତ୍ତ୍ୱ ଜାଣି ଆପଣ । ରାଜା ନୋହିବ କେବେହେଁ କରୁଣ ।
ଯେଉଁ ହେତୁରୁ ହସ୍ତ ସ୍ଥିତ ଧନ । ରଖି ନ ପାରେ ଦୟାଳୁ ରାଜନ ।
କେତେବେଳେ ଶାନ୍ତ । ଶୋଭା ପାଇ କେତେବେଳେ ଅଶାନ୍ତ । ୨୦
ଶତ୍ରୁ ମିତ୍ରଠାରେ ସମାନ ବୁଦ୍ଧି । ହୁଏ ଯତୀମାନଙ୍କର ସେ ସିଦ୍ଧି !
ଦୁଷ୍ଟ ଅପରାଧୀ ଯେବଣ ଜନ । ତାହାଠାରେ ରାଜ କ୍ଷମା ଦୂଷଣ ।
ତା କହିବା ଶୁଣ । ଯେଉଁ ଦଣ୍ଡ ତାର ହୁଏ ରାଜନ । ୨୨୧ ।
ଯେଉଁ ଭୃତ୍ୟ ରାଜ୍ୟ ଲୋଭ କରଣ । ଇଚ୍ଛା କରଇ ସ୍ୱାମୀ ନିଜ ସ୍ଥାନ ।
ଅହଂକାରେ ମୁ ବଡ ବୋଲି କହେ । ନାହିଁ ପ୍ରାୟଶ୍ଚିତ୍ତ ରଷି ତା କ[illegible]
କେବଳ ମରଣ । ଏଥୁଁ ଅନ୍ୟ ନାହିଁ ଜୀବ ତାରଣ । ୨୨୨ ।

ଲଜ୍ଜ ଦୟାଳୁ ଦ୍ୱିଜ ସର୍ବ ଭକ୍ଷ । ନାସ୍ତି ଅବଶ୍ୟ ସହାୟ ଅରକ୍ଷ ।
ଭୃତ୍ୟ ପ୍ରତିକୂଳ ମନ୍ତ୍ରୀ ପ୍ରମାଦୀ । ଉପକାରକ ଯେହୁ ହୁଏ ବାଦୀ ।
ଏହି ସପ୍ତଜଣ । ଛାଡ଼ଇ ବେଗେ ସେ ସୁଜ୍ଞାଣ ଜନ । ୩୦୩ ।
କେତେବେଳେ ସତ୍ୟ ମିଥ୍ୟା ବଚନ । କେତେବେଳେ ପ୍ରିୟ ଦୃଢ ଭାଷଣ
କେତେବେଳେ ହିଂସ୍ର ଦୟାଳୁ ହୋଇ । କେତେବେଳେ ଧନ ଦଅଇ ନେଇ
କେତେବେଳେ ବ୍ୟୟୀ । କେତେବେଳେ କରେ ବହୁତ ଅୟୀ । ୩୦୪
ବିଶେଷରେ ମୁଁ ଏକଥା ଜାଣଇ । ରାଜାର ନୀତି ବହୁବିଧ ହୋଇ ।
ଦେଖ ବାରଙ୍ଗନା ଲୋକରେ ଖ୍ୟାତି । ଏତେ ଗୁଣରେ ହୋଇଛନ୍ତି ସହିତ
ଶୁଣ ହେ ରାଜନ । ରାଜନୀତି ବେଶ୍ୟାବୃତ୍ତି ସମାନ । ୩୦୫ ।
ଏମନ୍ତେ କହି କହି ଦମନକ । ପ୍ରବୋଧନ୍ତେ ରାଜା ଛାଡ଼ିଲା ଶୋକ ।
ସିଂହାସନେ ବସି ପ୍ରଜାପାଳନ । କଲା ଦମନକ ସେ ତୁଷ୍ଟ ମନ ।
ହୋଇଣ ବୋଇଲା । ଦେବ ବିଜୟ ହେଉ ଶତ୍ରୁ ମଲା । ୩୦୬
ଏମନ୍ତେ ବୋଲିଣ ସୁଖେ ବିହାର । କଲେ ଦମନକ ସବୁ ରାଜାର ।
କାର୍ଯ୍ୟ କଲେ କରଟକ ସହିତ । ବିଷ୍ଣୁଶର୍ମ୍ମା କହେ ରାଜନ ସୁତ ।
ଏ ସୁହୃଦଭେଦ । ଶୁଣି ମନରୁ ତୁମ୍ଭେ ଛାଡ଼ ଖେଦ । ୩୦୭ ।
ରାଜପୁତ୍ରମାନେ କହିଲେ ପୁଣି । ସୁଖୀ ହୋଇଲୁଁ ଅମ୍ଭେ ଏହା ଶୁଣି ।
ବିଷ୍ଣୁଶର୍ମ୍ମା କଲେ ଏହି ଆଶିଷ । ତୁମ୍ଭମାନଙ୍କ ଶତ୍ରୁ ଯାଉ ନାଶ ।
ସବୁ ବାଳ ଜନ । ଦିଅନ୍ତୁ ଏକଥା ଶ୍ରବଣେ ମନ । ୩୦୮ ।

ଇତି ଶ୍ରୀ ହିତୋପଦେଶେ ନୀତିସାରେ ସୁହୃଦଭେଦ କଥନେ
ଦ୍ୱିତୀୟ କଥା ସଂଗ୍ରହଃ ।

## ବିଗ୍ରହ ।

### ରାଗ—ଗୈଶି ।

ପୁଣି କଥାରମ୍ଭ କାଳେ   ରାଜପୁତ୍ରେ କୁତୂହଳେ
କହୁଛନ୍ତି ଅମ୍ଭେମାନେ ସୁହୃଦଭେଦ ।
ଶୁଣିଲୁଁ ଅହେ ବ୍ରାହ୍ମଣ   କହ ବିଗ୍ରହକୁ ପୁଣ ।
ତୁମ୍ଭେ ଯାହା କହୁବନ୍ତି ସେହୁ ସେ ବେଦ ।
ଶୁଣି ବିଷ୍ଣୁଶର୍ମା କହଇ ।
ବିଗ୍ରହ କଥାକୁ ଶୁଣ ହେ ମନ ଦେଇ । ୧ ।
ହଂସ ମୟୂରର ଯୁଦ୍ଧ   ଯେଉଁକାଳେ ହେଲା ସିଦ୍ଧ
ସେ ସମୟେ ମେଘବର୍ଣ୍ଣ କାକ ଥିଲା ।
ମୟୂର ଅଣ୍ଡା ଶିରରେ   ସେନ ଧାଁଇଲା ସତ୍ୱରେ
ହଂସ ରାଜାପୁରେ ଯାଇ ପ୍ରବେଶ ହେଲା ।
ତାହାଠାରେ ବିଶ୍ୱାସ କରି ।
କିଛିଦିନ ରହି ପୁରୀ ପୋଡ଼ି ସଂହରି । ୨ ।
ଏହା ଶୁଣି ରାଜପୁତ୍ର   କହିଲେ ଅତି ବିଚିତ୍ର
କଥା ଏ କିରୂପ କହ ହେ ଦ୍ୱିଜବର ।
ବିଷ୍ଣୁଶର୍ମା କହୁଅଛି   ଶୁଣ ମହାରାଜ ବସି
କର୍ପୂର ଦ୍ୱୀପରେ ପଦ୍ମକେଳି ଯେ ସର ।
ତହିଁରେ ସେ ହିରଣ୍ୟ ଗର୍ଭ ।
ନାମେ ରାଜହଂସ ଅଛି ପାଳଇ ସର୍ବ । ୩ ।
ସର୍ବ ଜଳଚର ମିଳି   ତାକୁ ଅଭିଷେକ କରି
ରାଜା କଲେ ସର୍ବଜଳଚର ଉପରେ ।
ଯେବେ ନରପତି ନାହିଁ   ପ୍ରଜାମାନେ ଅବା କାହିଁ
ରହିବେ ନାଶକୁ ଯାନ୍ତି ନଷ୍ଟେ ସତ୍ୱରେ ।

ଯେହ୍ନେ ଜଳଧିରେ ତରଣୀ ।
କର୍ଣ୍ଣଧାର ନ ଥିଲେ ବୁଡ଼ଇ ସେଷଣି । ୪ ।
ରାଜା ରକ୍ଷା କରେ ପ୍ରଜା    ରାଜାଙ୍କୁ ବଢ଼ାଇ ପ୍ରଜା
ରକ୍ଷଣ ନ ହେଲେ ରାଜା ବର୍ଦ୍ଧନ ନୋହି ।
ଏକ କାଳେ ସୁବୃଷ୍ଟିଁ    କମଳରେ ସୁଖାସୀନ
ସବୁ ଲୋକ ସେନ ସଙ୍ଗେ ବସିଛି ସେହି ।
କେଉଣସି ଦେଶରୁ ବକ ।
ଆସି ନମସ୍କାର କଲା ସେ ଦୀର୍ଘମୁଖ । ୫ ।
ତାଙ୍କୁ ଦେଖି ରାଜହଂସ    ଡାକିଲା ହେ ଅସ ଅସ
ଦୀର୍ଘମୁଖ କେଉଁଠାରୁ ଅଇଲ ତୁମ୍ଭେ ।
ଅଛି କି କିଛି ବୃତ୍ତାନ୍ତ    ସେ କହେ ବଡ଼ ଉଦନ୍ତ
ତାହା କହିବାକୁ ଆସିଅଛୁଁ ହେ ଅମ୍ଭେ ।
ତା ଶୁଣିମା ହେଉ ରାଜନ ।
ଜମ୍ବୁଦ୍ୱୀପେ ବିନ୍ଧ୍ୟ ନାମେ ପର୍ବତ ଜାଣ । ୬ ।
ତହିଁରେ ସେ ଚିତ୍ରବର୍ଣ୍ଣ    ନାମେ ମୟୂର ରାଜନ
ଅଛି ତାର ଅନୁଚରେ ଦଗ୍ଧାରଣ୍ୟରେ ।
ବୁଲୁଥିଲେ ମୁହିଁ ତହିଁ    ଚରୁଥିଲି ମୋତେ ଚାହିଁ
ପଚାରିଲେ କେଉଁଠାରୁ ଅଇଲୁ ତୁରେ ।
ମୁଁ କହିଲି ମୁଁ ଅନୁଚର ।
କର୍ପୂର ଦ୍ୱୀପେ ହିରଣ୍ୟଗର୍ଭ ରାଜାର । ୭ ।
ସେ କହିଲେ ଏ ଦେଶକୁ    ଅଇଲୁ କିପାଁ ଅମ୍ଭଙ୍କୁ
କହ ମୁଁ କହିଲି କଉତୁକେ ଅଇଲି ।
ଶୁଣି ସେ କହିଲେ ପୁଣ    ଦୁଇ ଦେଶ ରାଜା ଗୁଣ
ମଧ୍ୟରେ ଅଧିକ କିଏ ଶୁଣି କହିଲି ।

ଯହେ ତୁମ୍ଭେ କ କହୁଅଛ ।
ବଡ଼ୁତ ଅନ୍ତର ଅଛି କଲେ ସେ କଛ । ୮ ।
ସେ ଯେଉଁ କର୍ପୂର ଦ୍ୱୀପ ଦ୍ୱିତୀୟ ସ୍ୱର୍ଗ ସ୍ୱରୂପ
ରାଜହଂସ ସ୍ୱର୍ଗପତି ଏ ମରୁ ସ୍ଥଳ ।
ଏ ସ୍ଥାନରେ ତୁମ୍ଭେ ପଡ଼ି ବୃଥା ମରୁଅଛ ଗଡ଼ି
ଅସ ହେ ଆମ୍ଭ ଦେଶରେ ରହିବା ଭଲ ।
ଏହା ଶୁଣି ପକ୍ଷୀ କ୍ରୋଧ ହେଲେ ।
ଆମ୍ଭର ଉପଦେଶ ନ ମାନ ରହିଲେ । ୯ ।
ଯେଣୁ ମୂର୍ଖ ଉପଦେଶ ଜାତ କରଇ ବିଦ୍ୱେଷ
ଯେତେ ପ୍ରକାର କହିଲେ ଶାନ୍ତ ନୁହଇ ।
ଭୁଜଙ୍ଗର ପୟଃପାନ କେବଳ ବିଷ ବର୍ଦ୍ଧନ
ତେଣୁ ମୂର୍ଖ ଉପଦେଶ ଉଚିତ ନୋହିଇ ।
ଦେଖ କି ସଦୁପଦେଶରେ ।
ସ୍ଥାନ ଭ୍ରଷ୍ଟ ଗଲେ ପକ୍ଷୀମାନେ ବନରେ । ୧୦ ।
ଶୁଣି ରାଜହଂସ କହେ କିରୂପ ଏକଥା ହୋଏ
କହ ବକ ପକ୍ଷୀରତ୍ନେ ସେ ବକ କହି ।
ନର୍ମଦାତୀରେ ପର୍ବତ ଉପତ୍ୟକାରେ ସଂସ୍ଥିତ
ବିଶାଳ ଶିମିଳୀ ବୃକ୍ଷ ବସନ୍ତ ତହିଁ ।
ପକ୍ଷୀମାନେ ବର୍ଷାକାଳରେ ।
ନୀଡ଼ ମଧ୍ୟରେ ନିବାସ କରି ବହିରେ । ୧୧ ।
ଏଥୁଅନ୍ତେ ଜଳଧର କରି ଘୋର ଅନ୍ଧକାର
ସବୁ ଦିଗ ବ୍ୟାପି କଲା ଜଳ ବର୍ଷଣ ।
ଶୀତେ ଥର ଥର ହୋଇ ସେ ତରୁ ମୂଳରେ ଯାଇ
ଠିଆ ହୋଇଣ ରହିଲେ ବାନରଗଣ ।

ଦେଖି ପକ୍ଷିମାନେ କହନ୍ତି ।
ତୁମ୍ଭେ କିପାଁ ଘର କର ନ ପାର ଏଥି । ୧୨ ।
ଆମ୍ଭେମାନେ ଏ ଅଣ୍ଟରେ ତୃଣକୁ ଆଣି
ଘର କରି ବଞ୍ଚୁଅଛୁଁ ବୃକ୍ଷ ଉପରେ ।
ତୁମ୍ଭେ ହେ ସମର୍ଥ ଅଛ କିପାଁନ୍ତି ଦୁଃଖ ପାଉଛ
ହସ୍ତ ପଦ ଥାଉ ବଡ ଅଳସ୍ୟରେ ।
ଶୁଣି ସେ ବାନର କ୍ରୋଧରେ ।
ବୋଇଲେ ଆମ୍ଭଙ୍କୁ ନିନ୍ଦା କରୁଅଛରେ । ୧୩ ।
ହଉ ବୃଷ୍ଟି ରହୁ ଅଜ ବୁଝିବା ତୁମ୍ଭର କାର୍ଯ୍ୟ
ଏମନ୍ତ ବୋଲନ୍ତେ ବୃଷ୍ଟି ରହି ସେ ଗଲା ।
ଉଠି ବୃକ୍ଷ ଉପରକୁ ବସା ଭାଙ୍ଗିଣ ତଳକୁ ।
ପକାଇ ଦିଅନ୍ତେ ଡିମ୍ବ ଫାଟିଣ ଗଲା ।
ଏହିହେତୁରୁ ସେ ଦୁର୍ଜ୍ଜନ ।
ଉପଦେଶ ନ ଦିଅନ୍ତି ଜାଣ ଜନ । ୧୪ ।
ପୁଣି ରାଜା ପଚାରଇ ଏଥୁଅନ୍ତରେ କି ହୋଇ
ବକ କହଇ ଶୁଣ ସେ ବୋଧେ କହିଲେ ।
କିଏସେ ରାଜହଂସକୁ ଦେଇଛି ରାଜପଦକୁ
କହ ବୋଲନ୍ତେ କହିଲି ମୁହିଁ ଯେ ଅରେ ।
ମୟୂରକୁ ରାଜା କଲେ ।
ଏହା ଶୁଣି ସବୁ ମତେ ମାରି ଧାଇଁଲେ । ୧୫ ।
ଦେଖି ତାଙ୍କ ପରାକ୍ରମ ମୁଁ ଦେଖାଇଲି ବିକ୍ରମ
ପରାଭବ କାଳେ ନର ଭୂଷଣ ସେହି
ଶୁଣି ହସିଣ ରାଜନ ପୁଣି କହଇ ବଚନ
ଆପଣା ପରର ବଳାବଳ ନ ବୁଝି ।

ଯେଉଁ ଜନ କରଇ କଳି ।
ତାଙ୍କ ବଳଥିଲା ଲୋକ ଦଅନ୍ତି ଦଳି । ୧୬ ।
ଏକ [illegible] ଥିଲା ବ୍ୟାଘ୍ର ଚର୍ମ୍ମ ଘୋଡ଼ି ହୋଇ
ଧାନ୍ୟ ଖାଉଥିଲା ନପ୍ରେ ଅବୁଦ୍ଧିମାନ ।
ଏକ ଦିନେ ବୋବାଇଲା କ୍ଷେତ୍ରପତି ତା ଶୁଣିଲା
[illegible] ଯେ ବଳିଲା ତାକୁ ମଲା ସେ ଦିନ ।
ବଚନ ଦୋଷରୁ ଏମନ୍ତ ।
ଶୁଣି ବକ ପଚାରେ ଏକଥା କେମନ୍ତ । ୧୭ ।
ଶୁଣି ରାଜା ପୁଣି କହୁ ହସ୍ତିନାପୁରରେ କେହି
ବିଳାସ ନାମ ରଜକ ଗର୍ଦ୍ଦଭ ତାର ।
ଦୁଃଖରେ ବହୁଥିଲା ଭାର ବହି ବହି ହୋଇଲା
କ୍ଷୀଣ ତା ଦେଖି ରଜକ କଲା ବିଚାର ।
ବିଚାରଣ ତାହାକୁ ନେଇ ।
ଘୋଡ଼ାଇ ବ୍ୟାଘ୍ର ଚର୍ମ୍ମରେ ବନେ ଛାଡ଼ଇ । ୧୮ ।
ଅରଣ୍ୟ ମଧ୍ୟରେ ଧାନ ଚରଇ ସେ ପ୍ରତିଦିନ
ଦିନେ କ୍ଷେତ୍ରପତି ତାକୁ ଦୂରୁ ଦେଖିଲା ।
ବାଘ ବୋଲି ତାକୁ ଜାଣି ପଳାଇଲା ସେହିକ୍ଷଣି
ସେ ଗର୍ଦ୍ଦଭ ପ୍ରତିଦିନ ସୁଖେ ଚରିଲା ।
ଏକ ଦିନେ ସମୀପେ ତାର ।
କେହି ଧୂସରଅ ଘୋଡ଼ି ହୋଇ କମ୍ବଳ । ୧୯ ।
ଧନୁରେ ଗୁଣକୁ ଦେଇ ଠିଆ ହୋଇଥିଲା ନର୍
ଦୂରରୁ ତାହାକୁ ସେ ଗର୍ଦ୍ଦଭ ଦେଖିଲା ।
ଗଧ ଅଟ୍ଟ ଅଛୁ ଜାଣି ଶବଦ କଲା ସେ ପୁଣି
ତାହାର ଅଭିମୁଖକୁ ବେଗେ ଅଇଲା ।

ଗର୍ଦ୍ଦଭ ଏ ବୋଲ ଜାଣିଲା ।
ଅନାସ୍ୱାଦରେ ତାହାର କାଣ୍ଡ ବନ୍ଧିଲା । ୨୦ ।
ଏହି ହେତୁରୁ ବିଶେଷ ବଚନ ଦୋଷରୁ ରୋଷ
ହୋଇ ଶୁଣି ଗୃଧ୍ରମୁଖ ପୁଣି କହଇ ।
ପଛେ ପକ୍ଷିମାନେ କହି ଅରେ ଦୁଷ୍ଟ ବକ ଥାଇ
ଆମ୍ଭ ଦେଶେ ଆମ୍ଭ ପ୍ରଭୁ ନିନ୍ଦା କରଇ ।
ଏହାଙ୍କୁ କେ କ୍ଷମା ନ କର ।
ଧର୍ମଶାସ୍ତ୍ରେ ଥଣ୍ଟାରେ ହାଣି ଏକ୍ଷଣେ ମାର । ୨୧ ।
ଏତେ ବୋଲି ପୁଣି ରୋଷ ହୋଇ କହିଲେ ରେ ହଂସ
ସବୁ କାଳେ ମୃଦୁ ସେ କି ରାଜତ୍ୱ ଯୋଗ୍ୟ ।
ଦେଖରେ ମୂର୍ଖ ଯେ ଜନ ସ୍ୱ ହସ୍ତରେ ସ୍ଥିତ ଧନ
ରକ୍ଷି ନ ପାରଇ ତାକୁ ପୃଥିବୀ ଭୋଗ୍ୟ ।
ହେବ କି ତାହାର ରାଜତ୍ୱ ।
ଯେଣୁ ତୁ କୂପ ମଣ୍ଡୂକ ଜନ୍ତୁ ଅତତ୍ତ୍ୱ । ୨୨ ।
ଶୁଣ ତୁ ଅରେ ମୂରୁଖ ସେବା କର ମହାବୃକ୍ଷ
ଫଳ ଛାୟାରେ ଗହନ ସେ ହୋଇ ଥାଇ ।
ଯେବେ ଦୈବେ ଫଳ ନାହିଁ କେ ଛାୟାକୁ ନିବାରଇ
ଏହି ହେତୁ ହୀନାଶ୍ରୟ କରିବ ନାହିଁ ।
ଦେଖ ତୁରେ ଶୁଣ ହସ୍ତରେ ।
ଦୁଧ ଥିଲେହେଁ ମଦ ଏ ବୋଲନ୍ତି ନରେ । ୨୩ ।
ଗୁଣବନ୍ତ ବଡ଼ ଲୋକ, ନିର୍ଗୁଣରେ ହୋଏ ସ୍ତୋକ
ଦର୍ପଣରେ ଗଜ ପ୍ରତିବିମ୍ବ ପରାଏ ।
ଯେଉଁ ରାଜା ଅତି ଖ୍ୟାତ ହୋଇ ଥାଇ ଅତି ଶକ୍ତ
ତାଙ୍କ ନାମେ ମିଛରେ କଲେ କାର୍ଯ୍ୟ ସେ ହୋଏ ।

ଶଶଙ୍କ ଚନ୍ଦ୍ରଙ୍କ ନାମରେ ।
ମିତ୍ରେ କହି ସୁଖେ ସେ ରହିଲେ ସରରେ । ୧୪ ।
ପୁଣି ପକ୍ଷୀରଜ୍ଞ ମୁହିଁ ଏ କଥା କହ ହେ ଭାଇ
ପକ୍ଷୀରନ୍ତ୍ରେ ପକ୍ଷୀମାନେ ମତେ କହିଲେ ।
ଦଣ୍ଡକାରଣ୍ୟେ ବର୍ଷରେ ବରଷାର ଅଭାବରେ
ଅକୁଳ ହୋଇଣ ଗଜଯୂଥ କହିଲେ ।
ଗଜପତି ସମୀପ ଯାଇ ।
ଜଳ ବିନା ଅନ୍ନ କ କରିବୁଁ ଗୋସାଇଁ । ୧୫ ।
ଶୁଣି ଗଜପତି ଯାଇଁ ଚନ୍ଦ୍ରସରକୁ ଦେଖାଇ
ଦେଖିଣ ଅପି ଦେଖାଇ ଦେଲ ତାହାଙ୍କୁ ।
ସେହି ଦନ୍ତ ପ୍ରତିଦିନ ଶୁଣିଲେ ଗଜ ସକଳ
ଚନ୍ଦ୍ର ସରୋବରେ ସ୍ୱଚ୍ଛ ଜଳେ ସ୍ନାନକୁ ।
ତାହାଙ୍କର ପାଦଘାତରେ ।
ତୀରରେ ଥିଲେ ଶଶକ ଚୂର୍ଣ୍ଣ ହୋଇଲେ । ୧୬ ।
ତହିଁରେ ବୃଦ୍ଧ ଶଶକ ଦେଖି କଲ ବହୁ ଶୋକ
ଗଜପାଦଘାତେ ଅମ୍ଭ କୁଳ ସରଲ ।
ଏଠାରେ କ କାର୍ଯ୍ୟ ହୋଏ ସେମାନଙ୍କ ମଧ୍ୟେ କହେ
ବନ୍ଧୁ ନାମ ଶଶକ ଶୁଣି କହିଲ ।
ଏଥି ପ୍ରତିକାର ଯେ ହେବ ।
ତାହାକୁ ମୁହିଁ କରିବ ଚିନ୍ତା ଛାଡ଼ିବ । ୧୭ ।
ଏମନ୍ତ ପ୍ରତିଜ୍ଞା କଲ ଗଜ ନିକଟକୁ ଗଲ
ଯାଉଁ ଯାଉଁ ବାଟରେ ମନରେ ବିଚାରି ।
କିରୂପେ ଗଜ ନିକଟେ କହିବ ଅତି ଉତ୍କଟେ
ତାହାର ଛୁଇଁବା ମାତ୍ରେ ଯିବ ମୁ ମରି ।

ଏହି ହେତୁ ଗିରଶିଖର ।
ଆରୋହଣ କରି ମୁଁ କହିବ ଉତ୍ତର । ୬୮ ।
ଏମନ୍ତ ବଚନ ସେହି ଗିରଶିଖରେ ଆରୋହି
ଅହେ ଯୂଥପତେ ଚନ୍ଦ୍ର ଅଦେଶ ଘେନ ।
ଅଛିଟି ହେ ଗଜମୁହିଁ ଗଜ ବୋଲେ କାହିଁପାଇଁ
କହ ଶଶକ କହଇ ଶୁଣ ବଚନ ।
ଚନ୍ଦ୍ରଙ୍କର ଆଜ୍ଞା ହୋଇଛି ।
ତୁମ୍ଭେ ସବୁ ଯାହା କଲ ଏ ମୋହେ କହି । ୬୯ ।
ଶସ୍ତ୍ର ଉଞ୍ଚାଇଣ ଯେବେ ଠିଆ ହୋଇଥିବ ତେବେ
ଦୂତ ଯାହା କହଇ ସେ ମିଥ୍ୟା ନ ହୋଇ ।
ଯେଣୁ ସତ୍ୟବାଦୀ ଦୂତ ନୃପତି ବଦାନ୍ତୀ ସତ
ତାଙ୍କୁ କ ତୁମ୍ଭ ପରାଏ ଲୋକ ମାରନ୍ତି ।
ସେହି ହେତୁ ତାଙ୍କ ଆଜ୍ଞାରେ ।
କହୁଅଛି ମୋର ଦୋଷ ନାହିଁ ଏଠାରେ । ୭୦ ।
ଯାହା ତୁମ୍ଭେ ଚନ୍ଦ୍ର ସର ରକ୍ଷକ ଶଶକ କୁଳ
ନିଃଶେଷରେ ନାଶ କଲ ଏ ଅନୁଚିତ ।
ଆମ୍ଭର ଏମାନ ଜାଣ ଦେଖ ଏ ଶଶକ ଚିହ୍ନ
ଏମନ୍ତ ଶୁଣିଣ ଗଜ ସଭୟ ଚିତ୍ତ ।
ଏହା ମୁହିଁ କଲି ନ ଜାଣି ।
ଆଉ ଥରେ ନ କରିବ ଏକଥା ପୁଣି । ୭୧ ।
ଦୂତ କହେ ପୁଣି ଶୁଣ ହେ ମତ୍ତ ଗଜ ରାଜନ
ଚନ୍ଦ୍ରେ କୋପେ କମ୍ପୁଅଛନ୍ତି ଏହି ସରରେ ।
ତାହାଙ୍କୁ କର ପ୍ରସନ୍ନ ଯାଅ ହେ ଗଜ ରାଜନ
ତାହା ଶୁଣି ଯୂଥପତି ଗଲା ସତ୍ୱରେ ।

ଜଳରେ ଚନ୍ଦ୍ରଙ୍କୁ ଦେଖିଲା ।
ଦେବ ମୁଁ ନ ଜାଣି କଲି ଏହା ବୋଇଲା । ୩୨ ।
ପୁଣି ଆଉ ନ କରିବ   ତୁମ୍ଭ ଆଜ୍ଞା ହେଲେ ଯିବ
ଏପରି ଶଶକ ଗଜପାଇଁ କହିଲା ।
ତାଙ୍କୁ କରି ନମସ୍କାର   ଗଲା ଗଜ ଶୀଘ୍ରତର
ଆପଣାର ସ୍ଥାନେ ଯାଇଁ ପ୍ରବେଶ ହେଲା ।
ଏହିହେତୁ କହୁଛି ମୁହିଁ ।
ମହାରଜଙ୍କୁ ସେବିଲେ ମହତ୍ତ୍ୱ ହୋଇ । ୩୩ ।
ତଦନ୍ତରେ ମୁ କହିଲ   ସେହି ସେ ପ୍ରଭୁ ବୋଇଲ
ମହାନୁଭବ ଯେ ଅଛି ସମର୍ଥ ସେହି ।
ଏହା ଶୁଣି ପକ୍ଷୀଗଣ   ମୋତେ ବାନ୍ଧେ ସେହିକ୍ଷଣ
ଅରେ ପାପ ଅମ୍ଭ ଦେଶେ ଚରୁଛୁ ତୁହି ।
କର୍ପା ଅମ୍ଭ ସ୍ୱାମି ନିନ୍ଦନ ।
କରୁଅଛୁ ବୋଲି ନେଲେ ତା ସନ୍ନିଧାନ । ୩୪ ।
ତାଙ୍କୁ କରି ନମସ୍କାର   ଦେବ ଅବଧାନ କରି
ଏହି ଦୁଷ୍ଟ ବକ ଅମ୍ଭ ଦେଶେ ଚରଇ ।
ତୁମ୍ଭଙ୍କୁ ନିନ୍ଦା କରଇ   ଶୁଣିଣ ରାଜା ବୋଲଇ
କହ ହେ କିଏ ଏହାର ସ୍ୱାମୀ ଅଟଇ ।
କେଉଁଠାରୁ ଏ ଆସିଅଛି ।
କହିବ ଶୁଣିମା ମୋର ଇଚ୍ଛା ହେଉଛି । ୩୫ ।
ପକ୍ଷୀମାନେ କହୁଛନ୍ତି   ଶୁଣ ପକ୍ଷୀରାଜ ପତି
ହିରଣ୍ୟଗର୍ଭ ରାଜାର ସେବକ ଏହି ।
କର୍ପୂର ଦ୍ୱୀପରୁ ଆସି—ଅଛି ଜଳସ୍ଥଳ ବାସୀ
ଦୀର୍ଘମୁଖ ନାମ ଖ୍ୟାତ ବକ ବୋଲାଇ ।

ମନ୍ତ୍ରୀ ଗୃଧ୍ର ମୋତେ ପଚ୍ଛାଇ ।
ସେଠାରେ କେ ମୋକ୍ଷ ମନ୍ତ୍ରୀ କହ ବିଚାରି । ୩୬ ।
ସର୍ବଜ୍ଞ ନାମରେ ଚକ୍ରବାକ ମନ୍ତ୍ରୀ ସେହୁ ଶୁଣି
ଗୃଧ୍ର ସମ ବିଚାରରେ ମୁହିଁ କହିଲି ।
ଗୃଧ୍ର ବୋଲେ ଏ ଉଚିତ　ଯେଣୁ ସ୍ୱଦେଶରେ ଜାତ
କୁଳାଗତ ବଣିକ ଏହା ଜାଣିଲି ।
ଶାସ୍ତ୍ରଜ୍ଞ ବ୍ୟସନ ରହିତ ।
ପଣ୍ଡିତ ବ୍ୟବହାରଜ୍ଞ ଯେ ସେ ଅମାତ୍ୟ । ୩୭ ।
ଏଥୁଅନ୍ତେ ଶୁକ କହି　କର୍ପୂର ଦ୍ୱୀପ ଯେ ସେହି
ଅଉ ଦ୍ୱୀପମାନେ ସବୁ ଜମ୍ବୁ ଦ୍ୱୀପରେ ।
ତହିଁରେ ଦେବ ତୁମ୍ଭର　ଅଛି ମଧ୍ୟ ଅଧିକାର
ତାହା ଶୁଣି ସତ୍ୟ ବୁଦ୍ଧି ହେଲା ରଜାର ।
ଯେଉଁ ହେତୁ ରଜା ବାଳକ ।
ନ ମିଳିଲା ପଦାର୍ଥରେ ହୋଏ କାମୁକ । ୩୮ ।
ଏଥୁଅନ୍ତେ ମୁହିଁ କହି　ବଚନେ ରଜତ୍ୱ ହୋଇ
ଯେବେ ତେବେ ଜମ୍ବୁ ଦ୍ୱୀପେ ଆମ୍ଭ ରଜାଇ ।
ରଜତ୍ୱ ଅଛି ଶୁଣିଲା　ଶୁକ ପୁଣି ପଚାରିଲା
କିରୂପେ ନିଶ୍ଚୟ ହେବ କହ ବିଚାର ।
ମୁ କହିଲି ହେଲେ ସଂଗ୍ରାମ ।
ରଜା ପୁଣି ହସି ବୋଲେ ଯାଅ ସ୍ୱଧାମ । ୩୯ ।
ଯାଇ କରି ତୋର ରଜ　କର ଗ୍ରହ ବେଗେ ସଜ
ଏଥୁଅନ୍ତେ ମୁ କହିଲି ଆପଣ ଦୂତ ।
ପଠିଅଥି ସେହି ଯିବ　ରଜା କହେ କିଏ ଯିବ
ଯେଣୁ ଏତେ ଗୁଣ ଥିଲେ ଦୂତ ପ୍ରଶସ୍ତ ।

ଚୁଣବନ୍ତ ଶୁଦ୍ଧ ଯେ ରକ୍ତ ।
ଯେ ପ୍ରଗଲ୍ଭ କ୍ଷମାବନ୍ତ ପ୍ରଭୁଭକ୍ତ । ୪୦ ॥
ବ୍ରାହ୍ମଣତ ବଶେଷରେ ସଦ୍ୟବନ୍ତ ଯେଉଁ ନରେ
ଅବ୍ୟସନୀ ବାଗ୍ମୀଦକ୍ଷ ପ୍ରିୟ କରନ ।
ଯାହା ଶୁଣେ ତାହା କହେ ଯେତ୍ନ ଶ୍ରୁଦବନ୍ତ ହୁଏ
ପରଧର୍ମ ଯେ ଜାଣଇ ଏତକ ଜନ ।
ଦୂତ କର୍ମେ ଶ୍ରେଷତ ଯୋଗ୍ୟ ।
ଏତେ ଗୁଣେ ଦୂତ ଥିଲେ ପୃଥିବୀ ଭୋଗ୍ୟ । ୪୧ ॥
ଏତେ ଗୁଣଥାଇ ଦୂତ ଅଛନ୍ତି ଏଥି ବହୁତ
ବଶେଷରେ ଦୂତ କର୍ମ ବ୍ରାହ୍ମଣ କରେ ।
ପ୍ରଭୁଙ୍କ ସଂତୋଷ କରେ ସମ୍ପତ୍ତ ବାଞ୍ଛା ନ କରେ
ଦେଖ କାଳକୂଟର କାଳିମା ପଦ୍ମରେ ।
ଥାଏ ସର୍ବାଣିକ କଣ୍ଠରେ ।
ଶିବଙ୍କ ଶୁଭ୍ରତା କେନ୍ତୁ କେବେ ନ ହରେ । ୪୨ ॥
ଶୁକଙ୍କୁ ତାଙ୍କଣ କହ ତୁ ଏହା ସଙ୍ଗତେ ଯାଇ
ଆମ୍ଭ ଅଜ୍ଞା ବୋଲି କହ ରାଜହଂସଙ୍କୁ ।
ଶୁକ କହେ ମୁହିଁ ଯାଇଁ ତୁମ୍ଭର ଅଜ୍ଞାକୁ ଯାଇ
ଯେରୂପେ ଅଜ୍ଞା ହେଉଛି ଯିବ ସେଠାକୁ ।
କେବଳ ମୁଁ ଏହା ସଙ୍ଗରେ ।
ନ ଯିବ ଦୁର୍ଜନ ଚିହ୍ନ ଦେଖି ଏହାରେ । ୪୩ ॥
ଖଳ କରେ ଦୁଷ୍ଟରଦ ଫଳେ ସାଧୁପରେ ସେହୁ
ଦେଖ ଦଶାନନ ସୀତା ହରଣ କଲା ।
ସମୁଦ୍ରାଦଥିର ବନ୍ଧନ ହୋଇଲା ଯେ ନିଷ୍ଠାରଣ
ଏଣୁ ଦୁର୍ଜନ ସଙ୍ଗତେ ଯିବା ନୋହଇ ।

ଖଳ ସଙ୍ଗେ ପ୍ରୀତି ଯେ କରେ ।
ହଂସ ବତକ ପରାଏ ସେ ଜନ ମରେ । ୪୪ ॥
ଶୁଣି ରାଜା କହେ ବାଣୀ   କହ ତୁ ଏ କଥା ପୁଣି
ଶୁକ କହେ ଉଜ୍ଜୟିନୀ ଅପନ୍ତରେ ।
ଏକ ଯେ ଅଶ୍ୱତ୍ଥ ଦ୍ରୁମ   ଥିଲା ଶାଳଦ୍ରୁମ ସମ
ତହିଁରେ ବାୟସ ହଂସ ଦୁହେଁ ବସିଲେ ।
ଏକ ଦିନେ ପଥିକ ଶ୍ରାନ୍ତ ।
ହୋଇ ଧନୁ କାଣ୍ଡ ଥୋଇ ସ୍ଥଳରେ ଶୁପ୍ତ । ୪୫ ॥
ତା ମୁଖେ ସୂର୍ଯ୍ୟ କିରଣ   ବ୍ୟାପ୍ତ ଦେଖି ସେହିକ୍ଷଣ
କୃପାରେ ସେ ହଂସ ପକ୍ଷୀ ପ୍ରସାରେ ଛନ୍ନ ।
କଲା ନିଦ୍ରା ସୁଖେ ମୁଖ   ପ୍ରସାରିତ ଦେଖି କାକ
ପୁରୀଷ ଉତ୍ସର୍ଗ କରି ପଳାଇ ଯାଇ ।
ନିଦ୍ରାରୁ ଉଠି ସେ ଚାହିଁଲା ।
ଉପରେ ହଂସକୁ ଦେଖି କାଣ୍ଡେ ବିନ୍ଧିଲା । ୪୬ ॥
ବର୍ତ୍ତକ ବୃତ୍ତାନ୍ତ ଶୁଣ   ଦୁର୍ଜନ ସଙ୍ଗର ଗୁଣ
ସମସ୍ତ ପକ୍ଷୀ ଗରୁଡ଼ ଯାତ୍ରାକୁ ଗଲେ ।
ସମୁଦ୍ର ତୀରେ ଗମନ   ବର୍ତ୍ତକ କାକ ସଙ୍ଗେଣ
କରନ୍ତେ ଗୋପ ମସ୍ତକେ ଦଧି ଦେଖିଲେ ।
ବାୟସ ତା ଖାଇଲା ପୁଣି ।
ଏଣୁ ଯାଇ ଦେଣ୍ଟୁ ଖାଇ ଯାଇ ସେକ୍ଷଣି । ୪୭ ॥
ଯେତେବେଳେ ଏ ଚାହିଁଲେ   ଉର୍ଦ୍ଧ୍ୱେ ତାକୁ ନ ଦେଖାଇ
ମନ୍ଦଗତି ବର୍ତ୍ତକକୁ ଦେଖଇ ସେହି ।
ଦଧିଭାଣ୍ଡ ହସ୍ତେ ଧରି   ଚାହିଁଲା ସେ ଗୋପ ଫେରି
ପଥେ ଦେଖିଲା ବର୍ତ୍ତକ କାକ ପଳାଇ ।

ବୋଧ ହେଲା ସେହୁ ଗୋପାଳ ।
ବର୍ତ୍ତକକୁ ମାଇ ତା ପୂରାଇଲା କାଳ । ୪୮ ।
ଏହିହେତୁରୁ ଯେ ମୁହିଁ ଦୁର୍ଜ୍ଜନ ସଙ୍ଗେ ନ ଯାଇ
ପୁଣି ମୁ ବୋଇଲି ଭାଇ ଶୁକ କର୍ପାଇ ।
ଏରୂପେ କହୁଛ ମୋତେ କି କହିବା ଅଛି ତୋତେ
ଯେରୂପେ ସେ ରାଜହଂସ ସେରୂପେ ତୁହି ।
ଶୁକ କହେ ଶୁଣରେ କାକୁ ।
ଯେଉଁରୂପେ କହିଲୁ ତୁ ସେରୂପେ ସବୁ । ୪୯ ।
ଦୁର୍ଜ୍ଜନ କହେ ବଚନ ହସି କରି ପ୍ରେମ ଜାଣ
ଅକାଳ କୁସୁମ ପ୍ରାୟ ଭୟ କରାଇ ।
ତୋତେ ଦୁର୍ଜ୍ଜନ ଲକ୍ଷଣ ବଚନ ବ୍ୟବହାରେଣ
ପ୍ରତ୍ୟକ୍ଷରେ ମୁ ଦେଖିଲି ଶୁଣ ହେ ଭାଇ ।
ଯେଉଁହେତୁ ତୁଇ ସଜାର ।
କାଳି ହେବାକୁ ବଚନ ନିଦାନ ତୋର । ୫୦ ।
ପ୍ରତ୍ୟକ୍ଷରେ ଦୋଷ କରୁ ଥାଇ ତାହା ଦେଖି କରୁ
ସାନ୍ତ୍ୱନା କଲେ ମୂରୁଖ ହୋଇ ସଂତୋଷ ।
ଦେଖ ଆପଣା ଭାର୍ଯ୍ୟାର ଦୋଷ ଦେଖି ରଥକାର
ମନେ ଆନନ୍ଦ ହୋଇଣ ଘଟିଲା ଶେଷ ।
ଶୁଣି ତା ଅଭ୍ୟାସ ବଚନ ।
ମୁଣ୍ଡେ ଭାର୍ଯ୍ୟା ଜାର ଧରି କଲା ନର୍ତ୍ତନ । ୫୧ ।
ଶୁଣି ରାଜା କହେ ପୁଣି ଏକଥା କହ ହେ ଶୁଣି
ମକୁ ମନ ଅଛି ଶୁକ କହଇ ଶୁଣ ।
ଥିଲେ ପୂର୍ବେ ଶ୍ରୀନଗର ମଧ୍ୟେ ଏକ ରଥକାର
ମନ ମତ ନାମ ତାର ବାସ ଅସଙ୍ଖ ।

ଶୁଣଇ ସେ ଜାର ସଙ୍ଗତ ।
ଏକଥରେ ବନ୍ଧେ ଦେଖା ନାହିଁ ସାକ୍ଷାତ । ୫୨ ।
ଏକ ଦିନେ ଅନ୍ୟ ଗ୍ରାମ  ଯିବା ସେଠାରେ କରମ
କିଛି ଅଛି ବୋଲି ଗଲା କେହି ନ ଜାଣି ।
କିଛି ଦୂର ଗଲା ଯାଇ  ଲେଉଟି ଆଇଲା ସେହି
ଘରକୁ ନ ଜାଣେ ତାହା ଭାର୍ଯ୍ୟା ଧର୍ଷଣୀ ।
ଖଟତଳେ ଯାଇ ହୋଇଲା ।
ଲୁନ ହୋଇ ଲୁଚି କରି ତହିଁ ଶୋଇଲା । ୫୩ ।
ଖଟତଳେ ଶୋଇବାର  ଭାର୍ଯ୍ୟା ନ ଜାଣଇ ତାର
ଅନ୍ୟ ଗ୍ରାମ ଗଲା ଜାଣି ବିଶ୍ୱାସ କଲା ।
ସନ୍ଧ୍ୟାକାଳେ ସେ ଜାରକୁ  ଆଣିଲା ସେହି ଘରକୁ
ତାର ସଙ୍ଗେ ଖଟ ପରେ ବିହାର କଲା ।
ସେହି କିଛି ବେଳ ଅନ୍ତରେ ।
ଜାଣିଲା ମୋ ପତି ଅଛି ଖଟର ତଳେ । ୫୪ ।
ଜାଣିଣ ମଳିନ ମୁଖ  ହେଲା ତା ମନରେ ଦୁଃଖ
ତା ଦେଖି କହଇ ଜାର କି ଏ ତୋହର ।
ବିଷାଦ ହେଲା ପଚାରି  ମତେ ପରତେ ହୁଅଇ
କ୍ରୀଡା କରୁ ନାହୁଁ ଭୁତ ଅତି ନିର୍ଭର ।
ଶୁଣି ସେ ଅସତୀ କହଇ ।
ମୋର ପ୍ରାଣେଶ୍ୱର ଆଜ ଘରରେ ନାହିଁ । ୫୫ ।
ଏ ଗ୍ରାମେ ସକଳ ଜନ  ପୂର୍ଣ୍ଣ ହେଲେହେଁ ଅରଣ୍ୟ
ପ୍ରାୟ ହୋଇଅଛି ମୋତେ ତା ଶୁଣି ଜାର ।
କହଇ ଏରୂପେ ପୁଣି  ତୋର ବରଠାରେ ଜାଣି
ତାହିଁ ମୁହିଁ ଦିନେ ସ୍ନେହ ଅଛି ମନରେ ।

ସ୍ୱାମୀ ତୋର କଲହ କର ।
ତା ଶୁଣି ଅସତୀ କହେ ଶୁଣ ବର୍ବର । ୫୬ ॥
କଠିନ ବଚନ କହି କ୍ରୋଧରେ ନୟନେ ଚାହିଁ
ଯେହୁ ପ୍ରିୟ ତାହାଠାରେ ଯାହାର ପ୍ରୀତ ।
ନ ଲାଗଇ ଯେଉଁ ନାରୀ ସଂସାରରୁ ହୋଇ ପାରି
ଧର୍ମବତୀ ବୋଲି ତାକୁ ଲୋକ କହନ୍ତି ।
ଧବ ଭୂଷା ବନା ଭୂଷଣ ।
ଧବ ନ ଥିଲେ ଭୂଷଣ ହୋଏ ଦୂଷଣ । ୫୭ ॥
ନଗରରେ ଥାଉ ଅବା ଅରଣ୍ୟକୁ ଯାଉ ଅବା
କିବା ପାପୀ ହେଉ ଶୁଦ୍ଧ ହେଉ ଯା ବର ।
ତାଠାରେ ପ୍ରୀତ ଅପାର ଯେଉଁ ନାରୀମାନଙ୍କର
ତାହାଙ୍କର ମଲେ ବାସ ସେ ସ୍ୱର୍ଗପୁର ।
ଗୁ ଯେ ପୃଷ୍ଟ ପାକ ସମାନ ।
ଚିନ୍ତ ବକାର ଯୋଗରୁ କଲି ସେବନ । ୫୮ ॥
ସେ ଯେଉଁ ପ୍ରିୟ ମୋହର ମତେ ବନବାକୁ ତାର
ଦେବତା ବ୍ରାହ୍ମଣ ଦାନେ ଅଛି ଶକତ ।
ସେ ଜଇଲେ ମୁଁ ଜଇଛି ମଲେ ଅଗ୍ନିରେ ପଶିଛି
ଏକଥା ନିଶ୍ଚୟ ଜାଣ ମୁଁ ନଷ୍ଟେ ସତୀ ।
ତାର ଦୁଃଖ ହେଲେ ମୁଁ ଦୁଃଖୀ ।
ଏ ମହାବ୍ରତ ମୋହର ତା ସୁଖେ ସୁଖୀ । ୫୯ ॥
ଯେମ ମାନବ ଦେହରେ ପଞ୍ଚାଶ ଲକ୍ଷ ତୃଣରେ
ତନ କୋଟି ପ୍ରମାଣ ସେ ହୋଇଣ ଅଛି ।
ତେତକ କାଳ ସେ ନାରୀ ସ୍ୱଅଇ ସ୍ୱର୍ଗ ବହାରି
ଯେ ଯଲ୍ଲ ବରର ସଙ୍ଗେ ଅଗ୍ନି ପଶିଛି ।

ଯେହ୍ନେ ସର୍ପଗ୍ରାହୀ ସର୍ପକୁ ।
ଗର୍ତ୍ତରୁ କାଢ଼ଇ ତେହ୍ନେ ନାଶୀ ଧବକୁ । ୬୦ ।
ଏହା ଶୁଣି ରଥକାର   ଧନ୍ୟ ମୁ ଯାହା   ଧାର
ସ୍ନେହବତୀ ପ୍ରିୟବାଣୀ ଏରୂପେ କେହି ।
ନାହିଁ ଏମନ୍ତ ବଚ୍ଛର   ସ୍ତ୍ରୀ ଜାର ସହିତ କର
ଖଟକୁ ମୁଣ୍ଡରେ ଧରି ନାଚିଲା ସେହି ।
ଏହିହେତୁ କହିଲ ମୁହିଁ ।
ପ୍ରତ୍ୟକ୍ଷେ ଦୋଷ ଦେଖିଲେ ବଶ୍ୱାସ ନାହିଁ । ୬୧ ।
ତଦନ୍ତରେ ସେହି ରାଜା   ମନେ କରି ବହୁ ପୂଜା
ଲୋକ ବ୍ୟବହାର ଚୃହିଁ ଯାଅ ବୋଇଲା ।
ଶୁକ ଯେ ପକ୍ଷେ ମୋହର   ଅମୃତ୍ଥ ଅତି ସତ୍ୱର
ବଚ୍ଛରଣ କାର୍ଯ୍ୟ କର ଯେ ହେବ ଭଲ ।
ଚକ୍ରବାକ ହସି କହଇ ।
ଦୀର୍ଘମୁଖ ଯାଇଥିଲେ କଲେ ଉଥାଇ । ୬୨ ।
ଦେଶ ଦେଶାନ୍ତରଂ ଯାଇ   ଆପଣା ଶକ୍ତିକି ଚୃହିଁ
ଉତ୍ତମ କାର୍ଯ୍ୟ କରଣ ଅଇଲା ଯାଇଁ ।
ସ୍ୱଭାବ ଏ ଦୁର୍ଜ୍ଜନର   ଗୁହା କଲି କଇବାର
ସୁଜନ ଚିତ୍ତ କେବେହେଁ ବକୃତ ନୋହି ।
ରାଜା ବୋଲେ ବଚ୍ଛର କର ।
ଗଲା କଥା ଚିନ୍ତା କଲେ କ ହେବ ଅର । ୬୩ ।
ଚକ୍ରବାକ କହେ ଶୁଣି   ଏକାନ୍ତେ କହିବ ପୁଣି
କେହି ନ ଜାଣିବ ଯାହା କହିବ ମୁହିଁ ।
ଯେଉଁ ହେତୁରୁ ନପୁଣ   ଜନ ଜାଣେ ଅକାରଣ
ଦଣ୍ଡି ଗତ ଚେଷ୍ଟା ନେଇ ଅକାର ଚୃହିଁ ।

ସବେ ଗଲେ ଏମନ୍ତ ଶୁଣି ।
ଚକ୍ରବାକ କହୁଅଛନ୍ତି ରଜାଙ୍କ ପୁଣି । ୬୪ ।
ଏମନ୍ତ ମୁହିଁ ଜାଣିଛି ଆମ୍ଭର ହିତରେ ଅଛି
ଯେହୁ କେହୁ ନିଯୋଗୀ ତାହାର ବଶ୍ୟରେ ।
ଏହି ବକ ଯାଇକରି ତାଙ୍କ ସଙ୍ଗେ ଭାଳି କରି
ଶୁକାଳୁ ଯେବଣ ସଙ୍ଗେ ଥିଲେ ଏଠାରେ ।
କହିବାରୁ ସବୁ ଜାଣିଲ ।
ବେ ଏହାଙ୍କୁ ପଠାଅଲ୍ କଲ୍ୟ ମଣିଲ । ୬୫ ।
ଯଥା ଯେବେ ହେଶୀ ହୋଇ ବୈଦ୍ୟର ସେ ପ୍ରାଣ ହୋଇ
ବ୍ୟସନୀ ସେ ହୋଇ ଏକା ନିଯୋଗୀ ଜନ ।
ମୂର୍ଖଠାରେ ଯେବେ ଧନ ସେ ମୂର୍ଖ ପଣ୍ଡିତ ପ୍ରାଣ
ଧନବନ୍ତ ଦୁଷ୍ଟଜନ ରଜା ଜୀବନ ।
ସଂସାରରେ ସମସ୍ତ ଜନ ।
ଯାହାରୁ ଯେ କାର୍ଯ୍ୟ ହୁଏ ସେ ତା ଜୀବନ । ୬୬ ।
ରଜା କହେ ମନ୍ତ୍ରୀ ଶୁଣ ହେଉ ଏଠାରେ କାରଣ
ନିରୂପଣ ଥାଉଁ ପଛେ ଏହା କରିବ ।
ବର୍ତ୍ତମାନ କି କରିବା କିରୂପେ ଏଥୁଁ ତରିବା
ଚକ୍ରବାକ କହେ ଦେବ ଚାର ସେ ଯିବ ।
ଏଥୁଅନ୍ତେ ବଳ ଅବଳ ।
ତାହାର ଆମ୍ଭର ଜାଣି କର ବଶ୍ୟର । ୬୭ ।
ସ୍ୱରାଜ୍ୟ ପର ରାଜ୍ୟରେ କେଉଁ ଅକାର୍ଯ୍ୟ କେ କରେ
ଏହା ଦେଖିବାକୁ ଚାର ଚକ୍ଷୁ ରଜାର ।
ନେତ୍ରହୀନ ଯେଉଁଜନ ଚାର ହୀନ ଯେ ରଜନ
ଦୁହେଁ ଅନ୍ଧ ବୋଲି ଜାଣ ନାହିଁ ସଞ୍ଚାର ।

ଦ୍ୱିତୀୟ ହିତ ଜନ ଯେନ ।
ସେ ଚର ଯାଉ ଏରୂପେ ଯାଥାନ୍ତୁ ବେନ । ୬୮ ।
ଚର ସେଠାରେ ରହିଣ   ସମସ୍ତ କାର୍ଯ୍ୟ ବୁଝିଣ
ଦ୍ୱିତୀୟ ପାଶକୁ ପେଶୁ ଏଠାକୁ ବେଗେ ।
ତୀର୍ଥ ଆଶ୍ରମ ଦେବତା   ସ୍ଥାନେ ଯେ ଶାସ୍ତ୍ର ବକ୍ତାତା
ସେ ଚର ତପସୀରୂପ ଧରି ତୋ ଆଗେ ।
କରି ସନ୍ନ ସମ୍ଭାଷଣକୁ ।
ଯାଉ ବେଗେ କପଟରେ ସେହି ଦେଶକୁ । ୬୯ ।
ଜଳେ ସ୍ଥଳେ ଚରୁଥିବ   ସେହି ଗୂଢ଼ ଚର ହେବ
ଦୁଇଠାରେ ସେବା ଥିବ ବୁଝ ରାଜନ ।
ଯେରୂପେ କେବଣ ଜନ   ବଗୁର ବଗୁର ମନ
ଭଉରୁ କହେ ସେ ଦକରୁ ନାହିଁ ଅନ ।
ଅନ୍ୟ ବକ ନିଯୋଗ କର ।
ତାର ଗୃହ ଲୋକ ଅଣ ଏ ରାଜଘର । ୭୦ ।
ସୁଗୁପ୍ତ କର ଏ କାର୍ଯ୍ୟ   କେହି ନ ଜାଣୁ ସେ ଅଜ୍ଞ
ଷଟ୍‌କର୍ଣ୍ଣି ହେଲେ ମନ୍ତ୍ର ଫାଟିଣ ଯାଇ ।
ଏଣୁ ଦୁଇ ଜଣେ ମନ୍ତ୍ର   କରିଣ ପାଳିବ ଯନ୍ତ୍ର
ଯେରୂପେ ସେ ଯନ୍ତ୍ରେ ପଡ଼ ଉଠି ନ ଯାଇ ।
ମନ୍ତ୍ର ଭେଦେ ଯେ ଦୋଷ ହୋଏ ।
ରାଜା ତାର ସମାଧାନ କରିବ କିଏ । ୭୧ ।
ରାଜା ବହୁତ କହଇ   ଅନ୍ୟ ଚର ଅପି ହୋଇ
ମନ୍ତ୍ରୀ କହେ ତେବେ ତୋର ଜୟ ହେବରେ ।
ଏଥୁଅନ୍ତେ ଦ୍ୱାରପାଳ   ପ୍ରବେଶ ହେଲା ସେ କାଳ
ନମସ୍କାର କରି କହେ ଶୁକ ଦ୍ୱାରରେ ।

ବସିଅଛୁ ଗୁମ୍ଫ ଦେଖିବ ।
ଜମ୍ବୁ ଦ୍ୱୀପରୁ ଆସିଛୁ ଯେ ଅଞ୍ଜା ହେବ । ୭୨ ।
ଚକ୍ରବାକ କହେ ଶୁଣି   ବସାଘରେ ରଖ ଆଣି
ପଛେ ରାଜାଙ୍କୁ ଦେଖିବେ ଯାଆନ୍ତୁ ଆଜ ।
ଶୁଣି ଦ୍ୱାରପାଳ ଗଲା   ରାଜା ମନ୍ତ୍ରୀଙ୍କି ଶୁଣିଲା
କହିଲା ବଗରାଜ ଆସି ହେଲା କ କାର୍ଯ୍ୟ ।
କଉବା ହେ କହନ୍ତୁ ମନ୍ତ୍ରୀ ।
ମନ୍ତ୍ରୀ ବୋଲଇ ବଗରାଜ ନୁହଇ ମାଢ । ୭୩ ।
କାର୍ଯ୍ୟ ସହାୟ ଶରୀର   ବୁଦ୍ଧି ସହାୟ ଯେ ହେବ
ଏ ଦୁଇ ମନ୍ତ୍ରୀ ଯେବେ କ ଅଧ୍ୟରୁ ଯୁଦ୍ଧ ।
ରାଜାଙ୍କୁ କହନ୍ତି କର   ନ କଲେ ସ୍ଥାନକୁ ଛାଡ଼
ତେବେ ଦୁହେଁ ବସ୍ତୁରେ ହୁଅନ୍ତି ଅସିଦ୍ଧ ।
ଶତ୍ରୁ ଜୟ ଯତ୍ନେ ବସ୍ତୁର ।
ଯେଣୁ ଅନର୍ଥ୍ୟ ବଳଯୁ ଯୁଦ୍ଧ ନ କର । ୭୪ ।
ଯେଉଁଜନ ବିନା ରଣ   କରଇ ଶତ୍ରୁ ସାଧନ
ସେହି ଜନ ଶୂର ବୋଲି ଲୋକେ କହନ୍ତି ।
ପର ସାମର୍ଥ୍ୟ ନ ଜାଣି   କହଇ ବହୁ କାହାଣି
ଯେଉଁଜନ ତାହାଙ୍କୁ କ ଶୂର ବୋଲନ୍ତି ।
ଦାରୁ ଲାଗି ଉଠେ ପଥର ।
ଯେହ୍ନେ ତେହ୍ନେ ପାଣି ଲାଗି ନୋହେ ସଫଳ । ୭୫ ।
ଅଳ୍ପ ଉପାୟ କରଇ   ବହୁ କାର୍ଯ୍ୟକୁ ସାଧଇ
ବସ୍ତୁରର ଫଳ ଏହି ଶୁଣ ରାଜନ ।
ବଗରାଜ ଉଦୟ ଦେଖି   ବ୍ୟବହାର କର ଯୋଖି
କାଳେ ଯେହ୍ନେ କୃଷି ଫଳବନ୍ତ ଗୁ ଜାଣ ।

ସେହିରୂପେ ଏ ଗାଢ ହୋଇ ।
ଅନ୍ତକାଳେ ନ ଫଳଇ ଠେରେ ଫଳେ ।
ଧୂଳୁଂ ଦେଖି ଭୟ କରେ   ନିକଟରେ ଧୀ
ବଡ଼ ଲୋକମାନଙ୍କର ଏ ଦୁଇ ଗୁଣ ।
କଷ୍ଟେ ବିପତ୍ତି ପଡ଼ିଲେ   ନ ଟାଳଇ ବୃଦ୍ଧି ହେଲେ
ଏତେ ଗୁଣ ଯାର ଅଛି ସେ ବଡ଼ ଜାଣ ।
ମହାବଳ ସେ ଚିତ୍ରବର୍ଣ୍ଣ ।
ବୁଝିଲେ ଆମ୍ଭର ବଳ ତହିଁରୁ ହୀନ । ୭୭ ।
ବଳବନ୍ତ ସଙ୍ଗେ ଯୁଦ୍ଧ   କରିବାର ନୋହେ ସିଦ୍ଧ
ହସ୍ତୀ ସଙ୍ଗେ ନର ଯାଦ ଯୁଦ୍ଧ ପରାଏ ।
କାଳକୁ ନ ଗୃହିଁ ଯେହୁ   ଅପକାର କରେ ସେହୁ
ମୂରୁଖ ବୋଲି ଜାଣଇ ମହାରାଜ ହେ ।
ବଳବନ୍ତ ସଙ୍ଗରେ କଳି ।
କଲେ ପକ୍ଷବନ୍ତ କୀଟ ପରାଏ ମରି । ୭୮ ।
ଅକାଳେ କୂର୍ମ ପରାଏ   ସଙ୍କୋଚ କରଣ କାୟେ
ଯେତେ ଅପକାର କଲେ ତାହା ସହିବ ।
ଯେତେବେଳେ କାଳ ହେବ   ତେତେବେଳେ ନ ସହିବ
କ୍ରୂର ସର୍ପ ପ୍ରାୟ ହୋଇ ରିପୁ ନାଶିବ ।
ଷଡ ସକ୍ଷ କର୍ମ ଭିତରେ ।
ତାର ଦୃଢ ଶୃଙ୍କ ଥାଉ ଆମ୍ଭ ଘରରେ । ୭୯ ।
ଯେହି କେହି ଜନ ଅନ୍ତ   ହୋଇଥିଲେହେଁ ବିକଳ୍ପ
ନ କରଣ ସେ ଯେବେ ଉପାୟ ଜାଣଇ ।
ତେବେ ଯେ ସେ ବଡ ହେଲେ   ତାକୁ ଉପାଡ଼ଇ ହେଲେ
ତୃଣ ପରାଏ ସେ ପୁଣି ଉଡ଼ିଣ ଯାଇ ।

ଦେଖ ନଦୀ ବେଗକୁ ଭୁହ ।
ବୃକ୍ଷମାନଙ୍କୁ ଉପାଡ଼ି ପକାଏ ସେହି । ୮୦ ।
ଗଡ଼ ପାଖେ କାନ୍ଥି ଦେଇ ଯେବେ ଧନୁର୍ଦ୍ଧର ଥାଇ
ଏକା ହେଲେ ଶଏ ଲୋକ ସଙ୍ଗେ ଯୁଝଇ ।
ଶତ ଶତ ଲକ୍ଷ ଲକ୍ଷ ଲୋକକୁ କରଇ ଲକ୍ଷ୍ୟ
ଏହିହେତୁର୍ ସେ ଦୁର୍ଗ ଅଧିକ ହୋଇ ।
ଯେବେ ରାଜା ଦୁର୍ଗେ ନ ଥାଇ ।
ଯୋଧ ବ୍ୟୂହ ମାନବ ଅଟ୍ଟଏ ହୁଅଇ । ୮୧ ।
ଗଡ଼ ବେଢ଼ି ଯେ କରିବ ଗୃହ ପାଖେ ଜଳି ଥିବ
ପର୍ବତ ପାଚେରୀ ଗୃହ ପାଖରେ ଥିବ ।
ସଜଳ ଯନ୍ତ୍ର କରିବ ନଦୀ ବନ ବେଢ଼ି ଥିବ
କଣ୍ଟା ଝୁଣ୍ଟା ପଙ୍କ ଖାଲ ବିସ୍ତାର ହେବ ।
ରସ ଧାନ୍ୟ କାଷ୍ଠ ପ୍ରବେଶ ।
ହେଉଥିବ ଯାଉଥିବ ସେ ଦୁର୍ଗ ଦେଶ । ୮୨ ।
ଏ ସାତ ଦୁର୍ଗ ସମ୍ପତ୍ତି ବେଗେ କର ହେ ନୃପତି
ରାଜା କହେ କେ କରିବ ସେ ଗଡ଼ ସଜ ।
ଚକ୍ରବାକ ଶୁଣି କହି ଯେଉଁ କାର୍ଯ୍ୟ ଯେ ହୁଅଇ
ତାହାକୁ ତହିଁରେ ଯୋଜ ହେ ମହାରାଜ ।
ଯିଏ ଯେଉଁ କର୍ମ ନ ଜାଣି ।
ସେ ଶାସ୍ତ୍ରଜ୍ଞ ହେଲେ ତାହା ନ କରେ ପୁଣି । ୮୩ ।
ସେହିହେତୁ ସାରସକୁ ବେଗରେ ଡାକ ଏଠାକୁ
ଡାକନ୍ତେ ସାରସ ଆସି ପ୍ରବେଶ ହେଲା ।
ତାହାକୁ ଅଶ୍ୱାସ କରି ରାଜା କହଇ ବିଚାରି
ସାରସ ତୁ ଗଡ଼ ସଜ କର ବୋଇଲା ।

ନମସ୍କାର କରି ସାରସ ।
ବୋଲେ ବହୁତ୍ତାଲୁ ସଙ୍ଗ ସେ ଦୁର୍ଗବାସ । ୮୪ ।
ଏହି ସର ଗଡ଼ ଜାଣ   ମଧ୍ୟ ଦ୍ୱୀପେ ରଖ ଧାନ
ସର୍ବ ସଂଗ୍ରହର ଭଲ ଧାନ୍ୟ ରକ୍ଷଣ ।
ଦ୍ରବ୍ୟ ସ୍ୱର୍ଣ୍ଣ ମୁଖେ ନେଇ   ଦେଲେ କ ପ୍ରାଣ ରହଇ
ଉତ୍ତମ ଲବଣ ରସ ରସରେ ଜାଣ ।
ରଖ ତାକୁ ତାତ୍ପର୍ଯ୍ୟ କରି ।
ତା ବିନା ବ୍ୟଞ୍ଜନ ହୋଏ ଗୋବର ପରି । ୮୫ ।
ରାଜା କହିଲେ ସହର   ଯାଇ ତୁମ୍ଭେ ଏହା କର
ଏ ସମୟେ ଦ୍ୱାରପାଳ ପ୍ରବେଶ ହୋଇ ।
କହଇ ହେ ଦେବ ଶୁଣ   ସିଂହଳ ଦ୍ୱୀପର ଜାଣ
ଆସିଅଛୁ ମେଘବର୍ଣ୍ଣ ବାୟସ କେହି ।
ଆପଣାର ଭୃତ୍ୟ ଘେନଣ ।
ସେ ବୋଲୁଛି କରିବ ମୁ ରାଜ ଦର୍ଶନ । ୮୬ ।
ଶୁଣି ରାଜା କହେ ପୁଣ   ସର୍ବଜ୍ଞ ସେ କାକ ଜାଣ
ତାହାକୁ ସ୍ୱୀକର ରଖିବାର ଉଚିତ ।
ଚକ୍ରବାକ ବୋଲେ ଥାଉ   ଏ କଥା ଏରୂପେ ହେଉ
ହେଲେ କ ହେବ କ କାକ ଏ ସ୍ଥଳଗତ ।
ତେଣୁ ଏ ଆମ୍ଭର ବିପକ୍ଷ ।
ଏହାକୁ ରଖିଲେ ଅମ୍ଭେ ହେବା ଅଲକ୍ଷ । ୮୭ ।
ଆତ୍ମପକ୍ଷ ଛାଡ଼ି କରି   ଯେ ପରପକ୍ଷ ଆଦରି
କରେ କର୍ମ ନୀଳବର୍ଣ୍ଣ ଶୃଗାଳ ପ୍ରାୟେ ।
ସେ ନାଶକୁ ଯାଇ ଜାଣ   ଏକଥା ନୁହଇ ଆନ
ରାଜା ପଚାରେ ଏ କଥା କିରୂପେ ହୋଏ ।

ଶୁଣି ଚକ୍ରବାକ କହଇ ।
ଏକ ଦେଶେ କଉଣସି ଶୃଗାଳ ଥାଇ । ୮୮ ।
ଏକ କାଳେ ସେ ନଗରେ ବୁଲୁଥିଲା ସେ ରାତ୍ରେ,
ପ୍ରାନ୍ତେ ନୀଳ ପାଣି ହାଣ୍ଡି ମଧ୍ୟେ ପଡ଼ିଲା ।
ଉଠିବାକୁ ଘା ଉପର ନ ପାଇଲା ଯେଣୁ ଫେର,
ପ୍ରାତଃକାଳେ ମୃତ ପ୍ରାୟ ପଡ଼ି ରହିଲା ।
ଏଥୁଅନ୍ତେ ଭନ୍ତ୍ର ଦେଖିଲା ।
ବାହାର କରି ତାହାକୁ ଦୂରେ ଫିଙ୍ଗିଲା । ୮୯ ।
ଏଥୁଅନ୍ତେ ସେହିଠାରୁ ବନକୁ ଯାଇଣ ଫେରି
ଦେଖି କରି ଅପଣାକୁ ବର୍ଣ୍ଣର କଲା ।
ବର୍ତ୍ତମାନ ମୁହିଁ ଅଟେ ସାଧିବି ଅପଣା କାର୍ଯ୍ୟ
ଏମନ୍ତ କଳ୍ପି ଅନ୍ୟ ଗାଉ ପଶିଲା ।
ଡାକ କହେ ଦେଖ ମୋ ବର୍ଣ୍ଣ ।
ସର୍ବୌଷଧିରେ ଦେବ ହୋଇଅଛୁ ଏସନ । ୯୦ ।
ବନସ୍ଥଦେବ୍ୟ ଅଭିଷେକ କଲେ ଦେବୀ ମୋତେ ଏକ
କହିଲେ ଯେ ବଶ୍ୟ ପଶୁ ତାଙ୍କ ଉପରେ ।
ତୁ ସ୍ୱଚ୍ଛ ଅଧିକାର ଏହି ବନର ଉପର
ସମସ୍ତଙ୍କୁ ପାଳି ଦେଇ କର ବେହାର ।
ତାହା ଶୁଣି ସବୁ ଶୃଗାଳ ।
ଷାଷ୍ଟାଙ୍ଗ:ପାଦରେ ପଡ଼ି କଲେ ଜୁହାର । ୯୧ ।
କହିଲେ ଦେବ ଯେ ଅଜ୍ଞା କରନ୍ତୁ ନାହିଁ ଅବଜ୍ଞା
ଅଜ୍ଞା ପ୍ରମାଣେ କରନ୍ତୁ କାର୍ଯ୍ୟ ବୋଇଲେ ।
ଏହି କ୍ରମେ ପଶୁଗଣ କଲେ ତା ପାଦେ ସେବନ
ସ୍ୱଛନ୍ଦେ ସେନ ସେହି କାର୍ଯ୍ୟ ସାଧିଲେ ।

ଏଥିଅନ୍ତେ ସିଂହ ଶାର୍ଦ୍ଦୂଳ ।
ପ୍ରବେଶ ହୋଇଲେ ଅସି ଅଗେ ତାହାର । ୧୨ ।
ଏହାଙ୍କୁ ଦେଖି ଶୃଗାଳ   ମନରେ ହୋଇ ବିକଳ
ସବୁ ଜାତିମାନଙ୍କୁ ଆଦର ନ କଲା ।
ତା ଦେଖି ସର୍ବ ଶୃଗାଳ   ମନରେ ହେଲେ ବିକଳ
ତା ଦେଖି ବୃଦ୍ଧ ଜମ୍ବୁକ ତାଙ୍କୁ କହିଲା ।
କର୍ପା ତୁମ୍ଭେ ବ୍ୟଗ୍ର ଚିତ୍ତ ।
ହେଉଅଛ ଅମ୍ଭେ ଜାଣୁ ଏଥିର ତତ୍ତ୍ୱ । ୧୩ ।
ଏତ ମାତ ନ ଜାଣଇ   ତେଣୁ ଅନାଦର କରଇ
ଯେବେ ଜାତି ଛାଡ଼ି ଅଜାତଙ୍କ ଭଜଇ ।
ମୁ ଜାଣଇଁ ଏହା ମର୍ମ୍ମ   ଯହିଁରୁ ଏତେ କରମ
ଯେଉଁରୂପେ ମରବ ତା କରବ ମୁହିଁ ।
ଏ ଯେ ସିଂହ ବ୍ୟାଘ୍ର ଅଛନ୍ତି ।
ବର୍ଣ୍ଣ ମାତ୍ର ଦେଖି ଜାତି କେ ନ ଜାଣନ୍ତି । ୧୪ ।
ଯେଉରୂପେ ଜାଣିବେ ସେହି   ସେରୂପେ ଉପାୟ କହି
ଶୁଣ ତୁମ୍ଭେ ସନ୍ଧ୍ୟାକାଳେ ତାର ନିକଟ ।
ଯାଇ କର ମହାରବ   ଶୁଣିଣ ସେହୁ କରବ
ଯାହାର ଯେ ସ୍ୱଭାବ ସେ ହୋଏ ପ୍ରକଟ ।
ଯେବେ ଶ୍ୱାନ ରାଜା ହୁଅଇ ।
ପାଣ୍ଡୋଇଙ୍କ ଦନ୍ତରେ କି ନ କାମୁଡ଼ଇ । ୧୫ ।
ଏଥୁଅନ୍ତେ ଶବ୍ଦ ଶୁଣି   ସେମାନେ ତା ଜାତି ଜାଣି
ମାରବେ ତା ଶୁଣି ଶବ୍ଦ କଲେ ସେମାନେ ।
ତାଙ୍କ ଶବ୍ଦ ସେହି ଶୁଣି   ବୋବାଇଲା ସେହିକ୍ଷଣି
ମାର ପକାଇଲେ ଜାଣି ସେମାନେ ବନେ ।

ଯାର ମର୍ମ ଯେ ଜାଣେ ସେହି ।
ତାକୁ ଅଗ୍ନି ଶୁଷ୍କ ବୃକ୍ଷପରି ଜ୍ୱାଳଇ । ୯୬ ।
ଏହି ହେତୁରୁ କହୁଛି ପର ପକ୍ଷ ଯେ ରହୁଛି
ଏଥିରୁ ଅକାର୍ଯ୍ୟ ହେବ ଶୁଣ ରାଜନ ।
ରାଜା କହଇ ସ୍ୱରୂପେ ଯେବେ ଏକଥା ଏରୂପେ
ତେବେ ଦୂରୁ ଅସିଅଛି ଦେଖ ଏ ଜନ ।
ରଖିବାର ଉଚ୍ଚ ବର୍ଗର ।
ଶୁଣି ଚକ୍ରବାକ କହେ ପେଶିବା ଗୃର । ୯୭ ।
ଗରୁଡ ସଜ ହୋଇଲା ଏହୁଠାରେ ସବୁ ହେଲା
ଶୁକକୁ ଡକାଇ ଅଣ କରି ଆଦର ।
ସାତ ପାଞ୍ଚ କଥା କହି ତାଙ୍କୁ ଦାଅ ପଠାଇ
ଦେବ ସେ ବେଗରେ ଯାଉ ଆପଣା ପୁର ।
ଏଥୁଅନ୍ତେ ସେ ସଭା କଲେ ।
ଶୁକ କାକ ଦୁହିଁଙ୍କ ଡକାଇ ଅଣିଲେ । ୯୮ ।
ଦଣ୍ଡାସନେ ବସି କରି ଶିର କଛି ନମ୍ର କରି
ଶୁକ କହୁଅଛି ଅହୋ ହିରଣ୍ୟଗର୍ଭ ।
ଯେବେ ତୋ ଶ୍ରୀ ଜୀବନରେ କାର୍ଯ୍ୟ ଅଛି ସତ୍ୱରରେ
ତେବେ ତାଙ୍କ ପାଦ ସେବ ସହିତେ ସର୍ବ ।
ଅପରାଧ ଏରୂପେ ଅଛି ।
ଦେଇଛନ୍ତି ଚିତ୍ରବର୍ଣ୍ଣ ଛାଡ଼ ଅବାଞ୍ଛା । ୯୯ ।
ଯେବେ ଏହା ନାହିଁ କର ରହିବାକୁ ସ୍ଥାନ କର
ସେ ରାଜାଧିରାଜ ଯେବେ କରିବେ ରୋଷ ।
ତୁମ୍ଭର ଯେ ଦଶା ହେବ ପଛେ ତା ପୁଣି ବୁଝିବ
ଏହା ଶୁଣି ରାଜା କୋପ ହେଲା ଅଶେଷ ।

ବୋଲେ ମୋର କେହି ନାହିଁ କି ;
ଉଠି ମେଘବର୍ଣ୍ଣ ବୋଲେ କହ କାହିଁକି । ୧୦୦ ।
ଦେବ ଆଜ୍ଞା ଯେବେ ଦେବ   ମାରିବ ଏ ଦୁଷ୍ଟ ଜୀବ
ଶୁଣି ଚକ୍ରବାକ ରାଜା କାକକୁ କହେ ।
ବହୁତ ଶାନ୍ତନା କର   ଯେବେ ଏ କଥା ନ କର
ଦୂତ ବଧ କରିବାର ଉଚିତ ନୋହେ ।
ଯେଉଁ ସଭା ବୃଦ୍ଧ ରହିତ ।
ସେ ସଭା ହୁଅନ୍ତି ଲୋକେ ବଡ଼ା ନନ୍ଦିତ । ୧୦୧ ।
ଯେ ବୃଦ୍ଧ ଧର୍ମ ନ କହେ   ସେହି ବୃଦ୍ଧ ବୃଦ୍ଧ ନୋହେ
ଯେଉଁଠାରେ ସତ୍ୟ ନାହିଁ ସେ ଧର୍ମ ନୋହି ।
ଯହିଁରେ କପଟ ଥାଇ   ସେ ସତ୍ୟ ସତ୍ୟ ନୁହଇ
ଏହିହେତୁ ରାଜା ବୃଦ୍ଧ ସେବା କରନ୍ତି ।
ଦୂତ ମ୍ଲେଚ୍ଛ ହେଲେ ଅବଧ୍ୟ ।
ଯେଉଁ ହେତୁ ରାଜା ଦୂତ ଆନନ୍ଦେଦ୍ଧ । ୧୦୨ ।
ଯାହାର ଯେ ଦୂତ ହୋଇ   ତାର ସେ ବଡ଼ାଇ କହି
ଯାହାଠାକୁ ଯାଇ ତାର ନିନ୍ଦା କହଇ ।
ଏଣୁ ଏ ଦୂତ ବଚନ   କେହି ନ ମଣଇ ଆନ
ସର୍ବଦା ଅବାଧ ଭାବେ ସେହି ବୋଲଇ ।
ଶୁଣି ରାଜା କାକ ସେ ଶାନ୍ତ ।
ହେଲେ ଏହା ଶୁଣି ଶୁକ ଗଲା ତ୍ୱରିତ । ୧୦୩ ।
ଚକ୍ରବାକ ଶୁକ ଆଣି   ବହୁ ପ୍ରବୋଧିଣ ପୁଣି
ଖଡ଼୍ଗ ନୋଳି କଣ୍ଠି ମାଳା ଦେଇ ଭେଜିଲା ।
ଶୁକ ବିନ୍ଧ୍ୟାଚଳ ଯାଇ   ରାଜାଠାରେ ଭେଟ ହୋଇ
ସାଷ୍ଟାଙ୍ଗେ ପାଦତଳରେ ପଡ଼ି ଗୋଇଲା ।

ରାଜା କହେ କ ବାର୍ତ୍ତା ଶୁକ ।
କେମନ୍ତ ଦେଶ ଦେଖିଲୁ କେମନ୍ତ ଲୋକ । ୧୦୪
ଶୁକ କହେ ରାଜା ଶୁଣ ସଂକ୍ଷେପ ଏ ବାର୍ତ୍ତା ଜାଣ
ଯୁଦ୍ଧରେ ଉଦ୍ବେଗ କର ଥାଉ ବଗୁର ।
କର୍ପୂର ଦ୍ୱୀପ ଯେ ଦେଶ ସେ ସ୍ୱର୍ଗର ଏକ ଦେଶ
ତାକୁ ନର୍ଣ୍ଣୟ କରବ ଅଉ କେ ସ୍ଥର ।
ଶୁଣି ରାଜା ଶ୍ରେଷ୍ଠ ଲୋକଙ୍କୁ ।
ଡାକଲା ବଗୁର କରବାକୁ ସଭାକୁ । ୧୦୫ ।
ସମସ୍ତଙ୍କୁ ରାଜା ଭଣେ ବଗ୍ରହ ପଡ଼ିଲା ଆସ
ଏଠାରେ ଯେ କାର୍ଯ୍ୟ ତାହା ତୁମ୍ଭେ କହତ ।
ଯେରୂପେ ଆମ୍ଭର କାର୍ଯ୍ୟ ହେବ ଶତ୍ରୁର ଅକାର୍ଯ୍ୟ
ଯେରୂପରେ ଆମ୍ଭର ରହିବ ମହତ୍ତ୍ୱ ।
ବଗ୍ରହତ ହେଲା ଅରମ୍ଭ ।
ଶୁକ କହିଲା ସେ ଗର୍ବ କରଛୁ ଦମ୍ଭ । ୧୦୬ ।
ଯେବେ ଅସନ୍ତୋଷ ହୋଇ ବ୍ରାହ୍ମଣ ନାଶ ଭଜଇ
ସନ୍ତୁଷ୍ଟ ହୋଇଲେ ରାଜା ନାଶ ହୁଅଇ ।
ବେଶ୍ୟା ଯେବେ ଲଜ୍ଜ ପାଇ ତାଲେହେଁ ସେ ନାଶ ଯାଇ
କୁଳସ୍ତ୍ରୀ ନର୍ଲଜ୍ଜ ହେଲେ ନାଶ ଭଜଇ ।
ଦୂରଦର୍ଶୀ ଗୃଧ୍ର କହଇ ।
ଦେବ ବଗ୍ରହ କେବେହେଁ କର୍ତ୍ତବ୍ୟ ନୋହି । ୧୦୭ ।
ଅପଣା ମନ୍ତ୍ରୀ ଅମାତ୍ୟ ପାଖେଥିବେ ଯେତେ ଭୃତ୍ୟ
ଏମାନଙ୍କ ଅନୁରାଗ ଦେଖିବ ଯେବେ ।
ଶତ୍ରୁର ଅମାତ୍ୟ ମନ୍ତ୍ରୀ ଯେ ଥିବେ ତାହାର ଭୃତ୍ୟ
ଏହାଙ୍କ ବରାଗତାରେ ଦେଖିବ ଯେବେ ।





ରାଜା ବିଗ୍ରହକୁ କରିବ ।
ଯେବେ ବିପକ୍ଷିତ ହେବ ଅପେ ମରିବ । ୧୦୮ ।
ଭୂମି ଧନ ମିତ୍ରବଳ ଏ ତିନୀ ବିଗ୍ରହ ଫଳ
ଏମାନେ ନଷ୍ଟା ହୋଇବେ ପୋ ।
ନାନା ପ୍ରକାରେ କପଟ କରି ନୋହିବ ତାହାଠ
ତା ଛିଦ୍ର ଦେଖି ବିଗ୍ରହ ଚେଷ୍ଟେ କରିବ ।
ରାଜା କହେ ଅମୃତ ବଳ ।
କେତେଥିନ୍ତ ଯାଇ ଦେଖୁ ମନ୍ତ୍ରୀ କେବଳ । ୧୦୯ ।
କେଉଁମାନଙ୍କର ଦୃଢ଼ ଭକ୍ତି ଅଛୁ ଆମ୍ଭଠାରେ
କେ ଅବା ଅଦୃଢ଼ ଭକ୍ତି ବୁଝ ତୁ ଯାଇ ।
କେତେ ବର୍ତ୍ତନ କାହାର ପାଉଛୁ କ କେତେ ତାର
ଅଛୁ ସବୁ ବୁଝି ତାହା ଦଅ ତୁ କୋଇ ।
ଜ୍ୟୋତିଷକୁ ଡାକ ତୁ ଅଣ ।
ଯାତ୍ରା କର୍ମରେ କହୁ ଯେ ଶୁଭଲକ୍ଷଣ । ୧୧୦ ।
ମନ୍ତ୍ରୀ କହେ ଦେବ ଶୁଣ ବ୍ୟଗ୍ରରେ ଯାତ୍ରା କରଣ
କରନ୍ତି ସେ ମୂର୍ଖମାନେ ଅକତ୍ଥରରେ ।
ଶତ୍ରୁ ବଳକୁ ଯାଆନ୍ତି ତହିଁ ପରାଭବ ପାନ୍ତି
ନିଶ୍ଚୟ ଏକଥା ତୁମ୍ଭେ ଜାଣ ମନରେ ।
ଶୁଣି ମନ୍ତ୍ରିକୁ ରାଜା କହି ।
ମୋହର ଉତ୍ସାହ ଭଙ୍ଗ ନ କର ତୁହି । ୧୧୧ ।
ଯେଉଁରୂପେ ପରଦେଶ ମାରି କରିବ ମୁ ବଶ
ସେହିରୂପ ମୋତେ କହ ବଚ୍ଛର ଜର ।
ଗୃଧ୍ର କହେ ଦେବ ଶୁଣ ଯାହା କହିବ ମୁ ପୁଣ
ଶୀଘ୍ରକଲେ ତୁମ୍ଭରତ କାର୍ଯ୍ୟ ସଫଳ ।

ବଶ୍ୟ ନ କଲେ ନ ହୋଇ ।
ଔଷଧ ଜାଣିଲା ମାତ୍ରେ କି ରୋଗ ଯାଇ । ୧୧୨ ।
ତଥାପି ଦେବ ତୁମ୍ଭର ଆଜ୍ଞା ଅଲଙ୍ଘିତ ମୋର
ଶାସ୍ତ୍ରରେ ଯାହା ଶୁଣିଛି କହୁଛି ମୁହିଁ ।
ଶୁଣିମା ହେଉ ତୋ ଦେବ ଯହିଁ ଯହିଁ ଭୟ ହେବ
ନଦୀ ଅଦ୍ରି ବନ ଦୁର୍ଗ ଯେ ଯହିଁ ତହିଁ ।
ସେନାପତି ବଳ ସେନଣି ।
ଆପଣେ ଚାଲିବ ଆଗେ ବ୍ୟୂହ କରଣ । ୧୧୩ ।
ସର୍ବବଳ ଅଧିପତି ପ୍ରବୀର ପୁରୁଷ ସେତ
ଅଗରେ ଯିବ ସେ ନିତ ଏ ନୀତି ରୀତ ।
ମଧ୍ୟେ କଳଈଙ୍କୁ ନେଇ ସ୍ୱାମୀ ଭଣ୍ଡାର ଏ ବେନି
ଅଉ କାଂସା ଶେଜା ଗଦି ବାସନ ଗୀତ ।
ଦୁଇ ପାଖେ ଅଶ୍ୱ ଚାଲିବ ।
ଅଶ୍ୱ ଦୁଇ ପାଖେ ରଥ ଯୋଡ଼ିଣ ଥିବ । ୧୧୪ ।
ରଥଙ୍କ ଦୁଇ ପାଖରେ ଚାଲୁଥିବେ ଦନ୍ତାବଳେ
ତାଙ୍କ ପଛେ ପଦାତି ଅଯୂଥ ସେନଣ ।
ପଛେ କ୍ଷୁଦ୍ର ସେନାପତି ଯେ ଥିବେ ଦୁର୍ବଳ ପତି
ତାଙ୍କୁ ନେଇ ଯିବ ଅଶ୍ୱାସନା କରଣ ।
ପତ୍ୟାଧ୍ୟକ୍ଷ ବଳ ସହିତ ।
ସ୍ୱଭଟ ମନ୍ତ୍ରିକ ନେଇଥିବ ସଙ୍ଗତ । ୧୧୫ ।
ଖାଲ ଡିପ ଯେଉଁ ସ୍ଥାନ ଜଳେ ହେଉଥିବ ମଗ୍ନ
ପର୍ବତ ପାହାଡ଼ ଥିବ ଯେତେ ସ୍ଥାନରେ ।
ହାତି କି ଚଢ଼ିଣ ଯିବ ସମଭୂମି ଯେବେ ହେବ
ଅଶ୍ୱକୁ ଚଢ଼ିଣ ଯିବ ଜଳେ ନୌକାରେ ।

ସୁଦୂଠାରେ ପଦାଡ ସଙ୍ଗେ ।
ଯେନ ଚଳେ ସିଦ୍ଧଯୁଦ୍ଧ କରବ ରଙ୍ଗେ । ୧୧୬ ।
ବର୍ଷା କାଳ ହେବ ଯେବେ   ମାଡଙ୍ଗେ ଗମନ ତେବେ
ପ୍ରଶସ୍ତ ଅନ୍ୟ କାଳରେ ତୁରଙ୍ଗମର ।
ଗମନ ପ୍ରଶସ୍ତ କର   ସବୁ କାଳେ ପାଇକର
ଦୁର୍ଗମ ମାର୍ଗେ ନୃପତ ରକ୍ଷା ସୈନ୍ୟର ।
ସ୍ଵ ଯୋଦ୍ଧାରେ ରକ୍ଷିତ ହେଲେ ।
କରବ ନୃପତ ସ୍ୱପ୍ନ ଯୋଗେ ନଦ୍ରାରେ । ୧୧୭ ।
ଗଡ କାନ୍ଥୀ କଣ୍ଟାବାଡ   ଭାଙ୍ଗିଣ ଶତ୍ରୁଙ୍କୁ ମାଡ
ମାରଣ ତାହାଙ୍କୁ ଉଣି ଅଣି ଧରଣ ।
ଶତ୍ରୁ ଦେଶ ପ୍ରଦେଶରେ   ବଣ କଣ୍ଟା କର ଖରେ
ଯେଉଁଠାରେ ରଜା ଥାଇ ସେଠାରୁ ଧନ ।
ଧନ ଥିଲେ ଯୋଦ୍ଧାଙ୍କୁ ଦେଇ ।
ଧନ ଦେଲ୍ ଲୋକ ପାଇଁ କେ ନ ଯୁଝଇ । ୧୧୮ ।
ଯେଉଁହେତୁରୁ ଏ ନର   ଦାସ ନୁହଇ ନରର
ଦ୍ରବ୍ୟର ସମସ୍ତେ ଦାସ ଶୁଣ ରାଜନ ।
ଆଦର ବା ଅନାଦର   ଧନ ଥିବା ନ ଥିବାର
କାରଣ ଏମରେ ହୋଇ ଭେଦେବ ଜାଣ ।
ଅଭେଦରେ ଯୁଦ୍ଧ କରନ୍ତ ।
ଏ ତାହାଙ୍କୁ ସେ ଏହାଙ୍କୁ ରକ୍ଷା କରନ୍ତ । ୧୧୯ ।
ଯେ ଥିବେ ଦୁର୍ବଳ ସୈନ୍ୟ   ତାଙ୍କୁ ସୈନ୍ୟ ମଧ୍ୟେ ଘେନ
ପାଇକମାନଙ୍କୁ ସୈନ୍ୟ ଆଗେ କରବ ।
ଏରୂପେ ଶତ୍ରୁଙ୍କୁ ବେଢି   କରବ ରାଷ୍ଟ୍ର ଉଜୁଡ଼
ରଥ ଗଜ ଘେନ ଶତ୍ରୁ ସୈନ୍ୟ ମାରବ ।

ସମାନ ଭୂମିରେ ଏ ଜାଣ ।
ଜଳ ବହୁଳରେ ନାଗ ନଉକା ଯେବ । ୧୬୦ ।
ଯେଉଁଦ୍ୱାରେ ଥିବ ଝାଡ   ଧନୁକୁ ଯେବ ପ୍ରହାର
ଦ୍ୱାରେ ସେ ପଢ ଖଣ୍ଡା ବୋଲୁ ସାବେଲୀ ।
ଯେବ ବଉବ ପ୍ରହାର   ତୃଣ କାଷ୍ଠ ଧାନ୍ୟ ଜଳ
ଯେରୂପେ ସେ ଗଜ ଉଦରକୁ ନ ଚଳେ ।
ସେରୂପେ କଟକ ଯତନ ।
ପାଚେଖି ପୋଖଖି ଥିଏ କର ରଞ୍ଜନ । ୧୬୧ ।
ରାଜା ଚତୁରଙ୍ଗ ବଳ   ମଧ୍ୟେ ଶ୍ରେଷ୍ଠ ଦନ୍ତୀବଳ
ସେରୂପରେ ଅଉ କେହି ନୁହନ୍ତି ଜାଣ ।
ଅନନ ଯୋଡ ପାହାର   ଦୁଇ ଦନ୍ତ ଶୂର ଗୋଡ
ଏତେ ଅଙ୍ଗ ଯେବ ଅଷ୍ଟାୟୁଧ ସେ ମଣ ।
ଜଙ୍ଗମ ଯେ ଅଶ୍ୱ ପ୍ରବାଇ ।
ସ୍ଥଳେ ଅଶ୍ୱାଧିକ ଯେହୁ ବଳସ୍ଥ ତାର । ୧୬୨ ।
ହସ୍ତୀକୁ ଅଶ୍ୱେହି ଯୋଧ   କରୁଥାଇ ଯେବେ ଯୁଦ୍ଧ
ଦେବତା ହୋଇଲେ ତାକୁ ଯୁଦ୍ଧରେ ହାର ।
ଯେବେ ସେ ଦୂରେ ଥାଅନ୍ତି   ଶତ୍ରୁମାନେ ବଶବର୍ତ୍ତୀ
ହୁଅନ୍ତି ଏ କଥା ନୋହେ ସନ୍ଦେହକାରୀ ।
ଯେତେ କର୍ମ ଯୁଦ୍ଧେ ପଡର ।
ତାହା କହିବା କ୍ରମରେ ଶୁଣ ହେ ବୀର । ୧୬୩ ।
ପ୍ରଥମୁ ଯୁଦ୍ଧ କରଣ   ସମସ୍ତ ବୀର ପାଳନ
କେଉଁ ଦଗେ କଏ ଥିବ ଏହା ବୁଝିବ ।
କେଉଁ ମାର୍ଗରେ କ ଥିବ   ଏହାକୁ ମଧ୍ୟ ବୁଝିବ
ଏରୂପେ ଏ ବଳାବଳ ପୁଣି ବୁଝିବ ।

ସୈନ୍ୟ ବଳ ନ ବୁଝି କର ।
ଯୁଦ୍ଧ କଲେ ଆପଣାର ହୁଅଇ ହାର । ୧୬୪ ।
ସ୍ୱଭାବରେ ଶୂର ହେବ ଅସ୍ତ୍ର ବଦ୍ୟା ଜାଣି ଥିବ
ଅନୁରାଗୀ ଶ୍ରମହୀନ ଅଧିକ ଖ୍ୟାତ ।
ଅଧିକ ଧୈର୍ଯ୍ୟ ଥିବ ଏରୂପେ ଯେ ବଳ ହେବ
ଅତ ଶ୍ରେଷ୍ଠ ବଳ ଏହି କହେ ପଣ୍ଡିତ ।
ଯେଉଁରୂପେ ସ୍ୱାମୀ ଆଦରେ ।
ନର ଯୁଦ୍ଧ କରେ ତେତେ ନୋହେ ଧନରେ । ୧୬୫ ।
ଶକ୍ତି ଥିଲା ଅଳ୍ପ ବଳ ତାକୁ ଜାଣ ଶ୍ରେଷ୍ଠ ବଳ
ବହୁ ମୁଣ୍ଡ ମଣ୍ଡଳୀକ ଅବଳ ବୋଲି ।
ଯାର ନୋହେ ଶକ୍ତିରଙ୍ଗ ସେ ଏକା ହୋଇଲେ ଭଙ୍ଗ
ସ୍ଥଳରେ ବହୁତ ଲୋକ ପକାଏ ମାରି ।
ଏଣୁକରି ସମର୍ଥ ଲୋକ ।
ତାକୁ ଖୋଜ ଲୋଡ ଆଣି ଗୃହେକରି ରଖ । ୧୬୬ ।
ଅନୁଗ୍ରହ ନ କରିବ ରହିବା ସ୍ଥାନ ନ ଦେବ
ଦେଇଥିବ ହରି ନେବ ବଳମ୍ୱେ ଦେବ ।
କପଟ ପଡିଲା କାଳେ ଭୂମି ହେବ ସବାଢାଳେ
ଏତେ ଦୋଷ ଥିଲେ ସୈନ୍ୟ ବିରାଗ ହେବ ।
ଆତ୍ମବଳ ପୀଡା ନ ଦେଇ ।
ଯିବ ଶତ୍ରୁ ଠାକୁ ସେନା ଯେନ ବଜାଇ । ୧୬୭ ।
ବହୁତ ଶତ୍ରୁଙ୍କୁ ଯେବେ ସୈନ୍ୟ ପୀଡା ହୋଏ ତେବେ
ଶତ୍ରୁର ସେ ସୁଖ ସାଧ୍ୟ ହୁଅନ୍ତି ସୈନ୍ୟ ।
ଯେବେ ଉପୁ ଭାଇ ଥାଇ ଉପାୟେ ତାକୁ ଫିଟାଇ
ତେବେ ଶତ୍ରୁ ବଶ ହୋଇ ଶୁଣ ରାଜନ୍ୟ ।

ତାହାର ଭାଇଙ୍କ ଉଠାଇ ।
ନେବ ଯେବେ ସେ ଶତ୍ରୁର ବଳ୍ଗ ନ ପାଇ । ୧୨୮ ।
ରାଜ ପୁତ୍ର ମୁଖ୍ୟ ମନ୍ତ୍ରି ଦୁହିଙ୍କ ସଙ୍ଗରେ ପ୍ରୀତ
କରଣ ଅନ୍ତ କଳହ ଜନମ କରୁ ।
ଯେଉଁ ଶତ୍ରୁ ସ୍ଥିର ଚିତ୍ତ ତାକୁ କରଇ ଅହିତ
ସେହି ପୁତ୍ର ମନ୍ତ୍ରିଙ୍କର ହୁଅଇ ଅରୁ ।
ରାଜା କହେ କ୍ଷ ହେବ କହ ।
ବହୁତ ବଚନ ଏକା ବଚନେ ଯାଇ । ୧୨୯ ।
ଯେତେ ଯେତେ ପର ହାନ ଅପଣା ଉଦୟ ଜାଣି
ତେତେ ତା ଉଦୟ ହୁଏ ଅପଣା ନାଶ ।
ଏ ଦୁଇ କଥାକୁ ଜାଣି ଯେ କାର୍ଯ୍ୟ କରଇ ପୁଣି
ସେ ନରକୁ ଜାଣ ତୁମ୍ଭେ ଗୁରୁଙ୍କ ଶିଷ୍ୟ ।
ଅନୁଚ୍ଛିଷ୍ଟ ଉଚ୍ଛିଷ୍ଟ ବଳ
ତେଜ ଧର୍ମର ପଣ୍ଡିତେ ନୁହନ୍ତି ଭୁଲ । ୧୩୦ ।
ଏଥୁଅନ୍ତେ ଉଠେ ରାଜା ଜ୍ୟୋତଷକୁ କରି ପୂଜା
ତାହାର କହିଲା ଲଗ୍ନେ ପ୍ରସ୍ଥାନ କଲା ।
ଏଥୁଅନ୍ତେ ଯେଉଁ ଚର ହିରଣ୍ୟଗର୍ଭ ରାଜାର
ପୂର୍ବେ ଯାଇଥିଲା ସେହି ପ୍ରବେଶ ହେଲା ।
ଆସୁଅଛୁ ସେ ଚିତ୍ରବର୍ଣ୍ଣ ।
କହିଲା ମଳୟ ପରେ ଅଛନ୍ତି ଜାଣ । ୧୩୧ ।
ଦୁର୍ଗର ଅନୁସନ୍ଧାନ ତୁମ୍ଭେ କର ପ୍ରତିକ୍ଷଣ
ଯେଉଁ ହେତୁରୁ ଏ ଗୃଧ୍ର ବଡ ବତୁର ।
କରଛି ଅମ୍ଭ ଉପରେ ଜାଣିଲି ମୁଁ ଇଙ୍ଗିତରେ
ପୂର୍ବରୁ ଅମ୍ଭ ଗଡକୁ ପେଶିଛି ଚର ।

ବୁଝି କର ଏଠାରେ ବୃତ୍ତ ।
ଯିବାବେଳେ ଦଗା କରୁ ଯିବ ଏ ସଠ । ୧୭୨ ।
ଚକ୍ରବାକ ଶୁଣି କହେ   କାକ ସଂଶ୍ରବଠ ହୋଏ
ରଜା କହେ ଶୁଣି କଦାଚିତ ନୁହଇ ।
ଏକଥା ଏରୂପେ ଯେବେ   ସତ୍ୟ ସେହି କର୍ପୂ ଠେବେ
ସେକାଳେ ଶୁକ ମାରଣ ଦେଖ କରଇ ।
ଶୁକ ଯେଉଁଦିନୁ ଅଇଲା ।
ସେହି ଦିନୁ ଯୁଦ୍ଧର ବତ୍ତର ହୋଇଲା । ୧୭୩ ।
ଏ କାକ ଥାସେ ସେଠାରୁ   ଅଛୁ ବହୁତ କାଳରୁ
ଶୁଣି କହୁଅଛୁ ମନ୍ତ୍ରୀ ଏତ ଅଜ୍ଞାତ ।
ଏହାଠାରେ ଶଙ୍କା ଜାତ   ହେଉଛୁ ଆମ୍ଭର ଚିତ୍ତ
ଶୁଣି ରାଜା କହେ ଆଗନ୍ତୁ ଜନ ହିତ ।
କଉଣପିଠାରେ ହୁଅଇ ।
ଶୁଣି ଶତ୍ରୁ ହିତ କଲେ ବନ୍ଧୁ ହୁଅଇ । ୧୭୪ ।
ବନ୍ଧୁ ଯେବେ ଅପକାର   କରଇ ହୋଇ ସେ ପାର
ନେଖ ଦେହ ଜନ୍ୟ ରୋଗ ଦୁଃଖ ଦିଅଇ ।
ଅରଣ୍ୟେ ଔଷଧ ଥାଇ   ସେ ଦେହକୁ ହିତ ହୋଇ
ଶୁଣ ବୀରବର ନାମେ ଥିଲା ସେ କେହି ।
ଶତ୍ରୁ ରାଜା ସେବକ ହେଲା ।
ଅଳ୍ପକାଳରେ ଆପଣା ସୁତକୁ ହେଲା । ୧୭୫ ।
ଶୁଣି ମନ୍ତ୍ରୀ ପଚାରଇ   ଏକଥା କରୂପେ ହୋଇ
ଶୁଣି ରାଜା ହଂସ କହେ ପୂର୍ବକାଳରେ ।
ମୁହିଁ ଶୂଦ୍ରକ ରାଜାର   ଥିଲି ଯେଉଁ କ୍ରୀଡ଼ାସର
କର୍ପୂରମଞ୍ଜରୀ ନାମ ହଂସୀ ତହିଁରେ ।

ପିତା ତାର କର୍ପୂର କେଳି ।
ତାହାର ସଙ୍ଗରେ ମୁହିଁ କରୁଛୁ କେଳି । ୧୩୬ ।
ସେ ସମୟେ ବୀରବର ନାମ କ୍ଷତ୍ରିୟ କୁମର
କଉଣସି ଦେଶରୁ ଅସିଣ ହୋଇଲା ।
କରିବ ରାଜ ଦର୍ଶନ ମୁହିଁ ରାଜପୁଏ ଜାଣ
ସେବକେର କରି ରହିବ ବୋଲି କହିଲା ।
ନେଇ ଦ୍ୱାରୀ ରାଜା ଦେଖାଇ ।
ରାଜାଙ୍କୁ ସେ ଦେଖି ବୀରବର କହଇ । ୧୩୭ ।
ମୋର ନାମ ବୀରବର ମୁହିଁ କ୍ଷତ୍ରିୟ କୁମର
ସେବକେର କରିବା ପାଇଁ ଅସିଛୁ ମୁହିଁ ।
ଶୁଣି ରାଜା ବୋଲେ ରହ କେତେ ବରତନ କହ
ମାସକରେ ଶୁଣି ବୀରବର କହଇ ।
ଦନକରେ ସ୍ୱର୍ଣ୍ଣ ସହସ୍ର
ଦେଇ ଯେବେ ପାରିବ ମୁ ହୋଇବ ଦାସ । ୧୩୮ ।
ରାଜା ବୋଲେ ଅଧ ଦେବା ତୋର ସାମଗ୍ରୀ ଦେଖିବା
ଯେବେ ତାହା ଶୁଣି ବୀରବର କହଇ ।
ଏ ଖଡ୍ଗ ଦୁଇ ବାହୁ ଏଥୁ ଅନ ନାହିଁ ଅଉ
ଶୁଣି ରାଜା ବୋଲଇ ମୁ ପାରିବ ନାହିଁ ।
ବୀରବର ତା ଶୁଣି ଗଲା ।
ତା ଦେଖିଣ ଅମାତ୍ୟ ରାଜାଙ୍କୁ କହିଲା । ୧୩୯ ।
ଏ ଯେବେ ଲେଉଟି ଯିବ ଅମ୍ଭଙ୍କୁ ନିନ୍ଦା ହୋଇବ
ସ୍ୱବଦନ ବରତନ ଦେଇ ରଖିବା ।
ଏହାର କି ଗୁଣ ଅଛି ଅମ୍ଭେ ତ ନ ଜାଣୁ କିଛି
ଜାଣିଲା ଉତ୍ତାରୁ ବେଗେ ମେଲାଣି ଦେବା ।

ଦେବ ଅଛୁ ଏହା'ର ଗୁଣ ।
ନ ଥିଲେ କ କହେ ଏତେ ଭାର ବର୍ଣ୍ଣନ । ୧୪୦ ।
ମନ୍ତ୍ରି ମୁଖୁଁ ଏହା ଶୁଣି ସେ ଶୁଦ୍ରକ ନୃପମଣି
ତାଙ୍କୁ ଲେଉଟାଇ ଅଣି ତାମ୍ବୂଳ ଦେଲା ।
ଅଜଠାରୁ ଏ ନଦର ଦ୍ୱାରପାଳ ଅଧିକାର
କରେ କରବାଳ ଧର କର କହିଲା ।
ସେହି ଦିନୁ ସେ ବୀରବର ।
ହେଲା ରଜା ଶୟନ ଘର ଦ୍ୱାରପାଳ । ୧୪୧ ।
ରାଜା ତାଙ୍କୁ ମୁଦ୍ରାଶତ ଚତୁଷ୍ଟୟ ଦେଇ ନିତ୍ୟ
ନେଇ କ କରଇ ଏହା ପଛେ ବୁଝଇ ।
ବୀରବର ବରତନ ନେଇ ଦଅଇ ବ୍ରାହ୍ମଣ
ଦେବତାଙ୍କୁ ଦୁଇଶ ଶଏ ବନ୍ଧୁ ଦେଇ ।
ପଞ୍ଚାଶ ଦେଇ ଦୀନଜନ ।
ବାକ ପଞ୍ଚାଶକ ନେଇ କରେ ଭୋଜନ । ୧୪୨ ।
ଏହିରୂପେ ନିତ୍ୟେ କର ଖଡଗ ହସ୍ତରେ ଧର
ରାଜଦ୍ୱାରେ ଜାଗରୁକ ହୋଇ ବସଇ ।
ଯେବେ ରାଜା ଅଜ୍ଞାଦେଇ ଘରକୁ ଯାଅ ବୋଲଇ
ତେବେ ଆପଣା ଘରକୁ ସେକ୍ଷଣ ଯାଇ ।
ତନି ଦିନ ଏରୂପେ ଗଲା ।
ରାଜା ଚତୁର୍ଥ ରାତ୍ରିରେ କାନ ଶୁଣିଲା । ୧୪୩ ।
ଏଥିଅନ୍ତେ ରାଜା କହେ ଏ ଦ୍ୱାରରେ ଅଛୁ କିଏ
ଶୁଣି ଦ୍ୱାରପାଳ କହେ ମୁଁ ବୀରବର ।
ରାଜା କହେ ଯାଅ ଦେଖ କିଏ କାନ୍ଦୁଛୁ ଅରକ୍ଷ
ଯେ ଅଜ୍ଞା ହେଉଛୁ ଦେବ ବୋଲି ସତ୍ୱର ।

ବୀରବର ଚରିଣ ଗଳ୍ପ ।

ଏଥିଅନ୍ତେ ରାଜା ମନେ ଚିନ୍ତା ହୋଇଲେ । ୧୪୪ ।

ଏହି ଯେ ରାଜକୁମର ଏକା କରି ପୈଣବାର
ମୋର ବଡ ଅନୁଚିତ ମହାଜବାରେ ।
ହଉ ଭଲ ଅମ୍ଭେ ଯିବା କ ରୋଦନ ଏ ବୁଝିବା
ଏମନ୍ତ ବୋଲି ତା ପଛେ ଗଲେ ସତ୍ୱରେ ।

ନଗରରୁ ବାହାର ହୋଇ ।

ଯେଉଁଠାରେ କାନ୍ଦନ୍ତି ସେଠାରେ ହୁଅଇ । ୧୪୫ ।

ବେଗେ ବୀରବର ଯାଇ ସେଠାରେ ପ୍ରବେଶ ହୋଇ
ରୂପ ଯଉବନ ଅଲଙ୍କାର ସମ୍ପୂର୍ଣ୍ଣ ।
ଦେଖି ତହିଁ ଏକ ନାରୀ ପଚାରଇ ଧୀର କରି
କଏସେ ତୁ କାହିଁକି କରୁଛୁ ରୋଦନ ।

ସେ କହଇ ଏ ରାଜା ଘରେ ।

ରାଜଲକ୍ଷ୍ମୀ ଥିଲି ଏହା ଭୁଜ ଛାୟାରେ । ୧୪୬ ।

ବହୁତ କାଳରୁ ମୁହିଁ ଥିଲି ଏହାଠାରେ ରହି
ଏବେ ଯିବି ଶୁଣି ବୋଲେ ସେ ବୀରବର ।
କରୂପେ ତୁମ୍ଭେ ଏଠାରେ ରହିବ କହ ସତ୍ୱରେ
ଶୁଣି ଲକ୍ଷ୍ମୀ କହୁଛନ୍ତି ତୋର ରାଜାର ।

ଯେଉଁରୂପରେ ଭଲ ହୋଇବ ।

ତାହା କହୁଅଛି ଶୁଣ ହେ ବୀର ସବ । ୧୪୭ ।

ଯେବେ ତୁ ଆପଣା ସୁତ ବତିଶ ଲକ୍ଷଣେଯୁକ୍ତ
ଶକ୍ତିବର ନାମ ତାର ତାହାକୁ ଆଣି ।
ମନେ ନ କରି ବିକଳ୍ପ କରଣ ତୁହି ସଂକଳ୍ପ
ଦେବଙ୍କ ଆଗେ ଖଡଗେ ପକାଅ ହାଣି ।

ତେବେ ମୁ ରହିବ ଏମନ୍ତ ।
କହି ଭଗବତୀ ହୋଇଲେ ଅନ୍ତର ଗୂଢ । ୧୪୮ ।
ଏଥିଅନ୍ତେ ବୀରବର ସ୍ୱ ଗୃହ ଯାଇ ସତ୍ୱର
ଆପଣା ପୁଏ ପତ୍ନୀକି ଦେଲା ଉଠାଇ ।
ଦୁହେଁ ଉଠିଣ ବସିଲେ ବୀରବରକୁ ଦେଖିଲେ
ସେ ପୁଣି ଦୁହିଁଙ୍କ ଲକ୍ଷ୍ମୀ ବୃତ୍ତାନ୍ତ କହି ।
ଶୁଣି ଶକ୍ତିବର କହଇ ।
ଧନ୍ୟ ମୁ, ସ୍ୱାମୀ କାର୍ଯ୍ୟରେ ମୋ ଦେହ ହୋଇ । ୧୪୯ ।
ତାତ ବିଲମ୍ବ ନ କର ବର୍ତ୍ତମାନ କ ବସ୍ତୁର
କହାଟିତ ଏରୂପରେ କର୍ମ ବିଷୟେ ।
ଏ ଦେହର ବନଯୋଗ କର୍ମ ଯେବେ ହୋଏ ଯୋଗ
ତେବେ ଏ ଧନ ଲୋକରେ ଧନ୍ୟ ସେ ହୋଏ ।
ପଣ୍ଡିତର ଏହି ଚରିତ ।
ପର ନିମନ୍ତେ ଛାଡଇ ଜୀବନ ବିତ୍ତ । ୧୫୦ ।
ଶକ୍ତିବର ମାତା କହେ ଯେବେ ଏହି କଥା ନୋହେ
ତେବେ ଏତେ ବର୍ତ୍ତନରୁ କରୁଁଯେ ମୁକ୍ତ ।
ହୋଇବା କରୁଁଯେ ଅମ୍ଭେ ବେଗେ ଯିବା ଚାଲ ତୁମ୍ଭେ
ଏମନ୍ତ ବସ୍ତୁର ପୁଏ ପତ୍ନୀ ସହିତ ।
ଦେବୀ ଆୟତନକୁ ଗଲେ ।
ବୀରବର ତାଙ୍କୁ ପୂଜା କରି କହିଲେ । ୧୫୧ ।
ଦେବୀ ଅନୁଗ୍ରହ କର ଶୂଦ୍ରକ ମହାରାଜାର
ବିଜୟ ହେଉ ଏ ଉପହାରକୁ ଘେନ ।
ଏମନ୍ତ କହି ପୁଏର ଶିର କାଟିଲା ସତ୍ୱର
ଏଥୁଅନ୍ତେ ବୀରବର ବସ୍ତୁରେ ମନ ।

ଶୁଣିଲି ମୁଁ ରାଜା ବର୍ତ୍ତନ ।
ପୁତ୍ର ନ ଥାଇ ମୋହର ବୃଥା ଜୀବନ ! ୧୫୨ ।
ଏମନ୍ତ ବୋଲି ଆପଣ ଶିର କାଟିଲା ସେକ୍ଷଣ
ବୀରବର ଭାର୍ଯ୍ୟା ସ୍ୱାମୀ ପୁତ୍ର ଶୋକରେ ।
କାଟିଲା ଆପଣା ଶିର ସେହିକ୍ଷଣରେ ସତ୍ୱର
ଏହା ଦେଖି ମନେ ରାଜା ବିଚାର କରେ ।
ଆମ୍ଭ ପ୍ରାୟ ବହୁତ ଲୋକ ।
ଅଛନ୍ତି ଏହାର ପ୍ରାୟ ନାହିଁ ତ୍ରିଲୋକ । ୧୫୩ ।
ଏହେତୁରୁ ମୁହିଁ ଥିଲା ଜୀବନ ଛାଡବ ରାଜ୍ୟ
କି ହୋଇବ ପ୍ରୟୋଜନ ଏଥିରେ ମୋର ।
ଏମନ୍ତ ବୋଲି ସ୍ୱଶିର କାଟିବାକୁ ସେ ସତ୍ୱର
ଖଡଗ ଘେନିଲା କରେ ଦେବୀ ଆଗର ।
ଭଗବତୀ ଦେବୀ ଅଇଲେ ।
ପୁତ୍ର ସାହସ ନ କର ବୋଲି ବୋଇଲେ । ୧୫୪ ।
କହିଲେ ସେ ବର୍ଦ୍ଧମାନ ରାଜ୍ୟ ଭଙ୍ଗ ନାହିଁ ଜାଣ
ଶୁଣି ରାଜା ଶୋକେ କହେ ନମସ୍କାର ।
ଦେବ ମୋ ରାଜ୍ୟ ଜୀବନ କିବା ଅଛୁ ପ୍ରୟୋଜନ
ଯେବେ ମୋରେ କୃପା କଲ ଏକଥା କର ।
ମୋର ଆୟୁ ଶେଷକୁ ଘେନି ।
ଉଠନ୍ତୁ ଏ ମାତା ପିତା ତନୟ ତନି । ୧୫୫ ।
ମଲେ ମୁଁ ସ୍ୱର୍ଗ ପାଇବ ଆଜ୍ଞାହେଉ ବେଗେ ଦେବ
ଶୁଣି ଭଗବତୀ କହେ ଶୁଣରେ ସୁତ ।
ଦେଖି ତୋର ମନୋତ୍ସାହ ଭୃତ୍ୟଠାରେ ଅତି ସ୍ନେହ
ସଂତୁଷ୍ଟ ହୋଇଲି ମୁହିଁ ଯାଅ ନଶାନ୍ତ ।

ସଦା ତୋର ବିଜୟ ହେଉ ।
ଭାର୍ଯ୍ୟା ପୁତ୍ର ସହିତରେ ତୋ ଚିରଂ ଜୀଉ । ୧୫୬ ।
ଏଥୁଅନ୍ତେ ବୀରବର ଉଠିଣ ସପୁତ୍ର ଦାର
ପ୍ରବେଶ ହୋଇଲେ ଯାଇଁ ଅପଣା ଘରେ ।
ସେମାନେ କେ ନ ଜାଣନ୍ତ ହୋଇ ଏକାକୀ ନୃପତ
ଯାଇଁ ପ୍ରାସାଦ ଭିତରେ ସୁଖେ ଶୋଇଲେ ।
ବୀରବର ଦ୍ୱାରେ ଜଗିଲା ।
ପୁଣି ରାଜା ତାହାକୁ ଡାକିଣ ପୁଛିଲା । ୧୫୭ ।
ବୀରବର ଯାଇଥିଲୁ କାନ୍ଦୁଥିଲା କେ ଦେଖିଲୁ
ଏମନ୍ତ କହନ୍ତେ ବୀରବର କହିଲା ।
ଦେବ ଯାଇ ମୁ ଦେଖିଲି କାନ୍ଦୁଥିଲା ଏକ ସ୍ତ୍ରୀରୀ
ମୋତେ ଦେଖିଲା ମାତ୍ରେ ସେ ଅଦୃଶ୍ୟ ହେଲା ।
କେହି ଅନ୍ୟ ନାହିଁ ସେଠାରେ ।
ଶୁଣି ରାଜା ଚିନ୍ତରେ ଅପଣା ମନରେ । ୧୫୮ ।
କହୁଁପେ ଏ ସତ୍ତ୍ୱ ଗୁଣ ପ୍ରଧାନ କହନ୍ତା ପୁଣ
'ଆପଣାର ଗୁଣତ ଅପଣେ ନ କହି ।
ପ୍ରିୟବାଦୀ ଅକୃପଣ ଶୂର ଆତ୍ମଶ୍ଳାଘାହୀନ
ଦାତା ଅପାତ୍ରରେ ଦାନହୀନ ହୁଅଇ ।
ପ୍ରଗଲ୍ଭ ଯେ ନିଷ୍ଠୁର ନୋହି ।
ଏତେ ଗୁଣ ଥିଲେ ମହା ପୁରୁଷ ହୋଇ । ୧୫୯ ।
ଏହାଠାରେ ସବୁ ଅଛି ଅନ୍ୟଠାରେ କିଛି କିଛି
ଅଛି ଏତେ କହି ରାଜା ଶେଷ ଲୋକରେ ।
ଏହାର ଯେତେ ବୃତ୍ତାନ୍ତ କହିଲେ ତା ଅଦ୍ୟପ୍ରାନ୍ତ
କର୍ଣ୍ଣ କର୍ଣ୍ଣାଟ ରାଜ୍ୟରେ ରାଜତ୍ୱ ଦେଲେ ।

ସେହି ବନୁ ସେ ଖାରବର ।
କର୍ଣ୍ଣାଟ ରାଜ୍ୟରେ କଲା ରାଜାଧିକାର । ୧୬୦ ।
ସେହି ହେତୁରୁ ଅଗନ୍ତୁ ଜାତ କପଁା ହେଲା ହେତୁ
ସେବା ନ କରଇ ବା ସେ ଉତ୍ତମାଧମ ।
ମଧ୍ୟ ଏମାନେ ଅଛନ୍ତି କାହାର କରୂପେ ଖାଦ
ଅମ୍ଭେ ବୁଝିବାରେ ଏହି କାକ ଉତ୍ତମ ।
ଶୁଣି ଚକ୍ରବାକ କହନ୍ତି ।
ଅକାର୍ଯ୍ୟକୁ କାର୍ଯ୍ୟ କହେ ଯେ ସେ କୁମନ୍ତ୍ରୀ । ୧୬୧ ।
ସ୍ୱାମି ଇଚ୍ଛାକୁ ନ ଗ୍ରହି କରଇ ଯେ ମନ୍ତ୍ରୀ ସେହି
ସ୍ୱାମି ଇଚ୍ଛା ଭଙ୍ଗ କଲେ ସ୍ୱାମି ମନରେ ।
ଦୁଃଖ ହୋଇ ଯେବେ ପ୍ରିୟ ହୁଅଇ ଏତ ନିଶ୍ଚୟ
ଅକାର୍ଯ୍ୟ କରଣେ ନାଶ ଅପ୍ରିୟତାରେ ।
ଯେଉଁ ହେତୁ ଏରୂପେ ହୋଇ ।
ସ୍ୱାମିଙ୍କ ନ ଯୋଗାଇଲେ ସୁମନ୍ତ୍ରୀ କହି । ୧୬୨ ।
ଶୁଣ ଦେବ ମୋ ବଚନ କହୁଛି ଏକ କଥନ
ଏକକଣେ ପୁଣ୍ୟ କର ଯାହା ପାଇଲା ।
ହେବ ମୋହର ସେ ଧନ ନାପିତ କରଣ ମନ
ଅଜ୍ଞାନରେ ଭିକ୍ଷୁଜନ ବଧ ସେ କଲା ।
ଅବଶ୍ୟରେ ମଲା ନାପିତ ।
ବିଶ୍ୱର ନ କଲେ ସର୍ବେ ହୁଅନ୍ତି ହତ । ୧୬୩ ।
ରାଜା ପଚାରେ କରୂପେ ଏକଥା କହ ସ୍ୱରୂପେ
ମନ୍ତ୍ରୀ କହେ ଅଯୋଧ୍ୟାରେ କ୍ଷତ୍ରିୟ ଥିଲା ।
ଚୂଡ଼ାମଣି ନାମ ତାର ଧନ ନିମିତ୍ତେ ଶିବର
ସେବା କାୟ କ୍ଳେଶରେ ସେ ବହୁତ କଲା ।

ତହିଁରୁ ସେ ନିଷ୍ପାପ ହେଲା ।
ସ୍ୱପ୍ନରେ ତାହାଙ୍କୁ ଶିବ ଅଜ୍ଞା ହୋଇଲା । ୧୬୪ ।
ଭୂହି ଥିକ ପ୍ରାତଃକାଲ    ଖୁରେ ହେଉଥିବୁ କ୍ଷୌର
ହସ୍ତରେ ଦଣ୍ଡ ଧରଣ ଦ୍ୱାରେ ବସିବୁ ।
ଏଥୁଅନ୍ତେ ଆଗନ୍ତୁକ    ଭିକ୍ଷୁ ଯେ ଆସିବ ଏକ
ଦୟା ଗତ ଦଣ୍ଡରେ ତାହାଙ୍କୁ ମାରବୁ ।
ଏଥୁଅନ୍ତେ ସେ ଭିକ୍ଷୁ ଜନ ।
ସୁବର୍ଣ୍ଣ ପୂର୍ଣ୍ଣ କଳସ ହୋଇବ ଜାଣ । ୧୬୫ ।
ସେ ଧନରେ ତୋର କାଳ    ସୁଖରେ ଯିବ ନିଶ୍ଚଳ
ନିଧିର ଉପାୟ ଏହି ଜାଣିଲା ସେହି ।
ଏହିରୂପେ ମୁଁ କରିବ    ନିଶ୍ଚୟ ଧନ ପାଇବ
ଏମନ୍ତ ବିଚାରି ଦଣ୍ଡ ଧରି ଜଗଇ ।
ପ୍ରତିଦିନ କ୍ଷଉର ହୋଇ ।
ପ୍ରାତଃକାଳୁ ବସିଥାଇ ଭିକ୍ଷୁଙ୍କୁ ଚାହିଁ । ୧୬୬ ।
ଏକ ଭିକ୍ଷୁ ଏକକାଳେ    ପ୍ରବେଶ ହୋଇଲା ଦ୍ୱାରେ
ତାଙ୍କୁ ଦେଖି ସେ ନାପିତ ପିଟିଲା ଧରି ।
ସେହି ଦୋଷରୁ ନାପିତ    ଯେନ ଗଲେ ରାଜ ଭୃତ୍ୟ
ପାଣ୍ଡୋଇ ଦଣ୍ଡ ପ୍ରହାରେ ତାହାଙ୍କୁ ମାରି ।
କହଇ ମୁଁ ଏହି ହେତୁରୁ ।
ପୁଣ୍ୟରୁ ଯେତୁ ହୁଅଇ ନୁହେ ଆନରୁ । ୧୬୭ ।
ରାଜା କହେ ପୂର୍ବ ବୃତ୍ତ    କଥାରେ ପର ନିଶ୍ଚିତ
କିରୂପେ ହୋଇବ ଏତୁ ସ୍ୱଭାବ ମିତ ।
କିବା ଏ ବଣ୍ଡାସପାଣି    ଅମ୍ଭଙ୍କୁ ମାରିବ ଯାତ-
କାରେ ଅସିଅଛି ଶତ୍ରୁଠାରୁ ନିଶ୍ଚିତ ।

ପ୍ରସ୍ତୁତ କଥାକୁ ଘଟଣ ।
ଅପ୍ରସ୍ତୁତ କଥାରେ କି ହେବ କାରଣ । ୧୬୮ ।
ମଳୟ ପର୍ବତ ଶୃଙ୍ଗେ   ଚିତ୍ରବର୍ଣ୍ଣ ରାଜ ରଙ୍ଗେ
ବସିଅଛି କି କରିବା କହ ବଗୁର ।
ମନ୍ତ୍ରୀ ବୋଲେ ଶୁଣ ରାଜ   ଚୁର ମୁଖରୁ ମୁଁ ଅଜ
ଶୁଣିଲି ସେ ଚିତ୍ରବର୍ଣ୍ଣ ଅମାତ୍ୟ ଗିର ।
ଆଦର ସେ ନ କଲା ଯେଣୁ ।
ଜିଣିମାକୁ ଯୁଦ୍ଧରେ ଶକ୍ୟ ହେବ ତେଣୁ । ୧୬୯ ।
ତା କହିବା ତୁମ୍ଭେ ଶୁଣ   କ୍ରୂର ଅଳସ ଯୌବନ
ଅସତ୍ୟ ପ୍ରମାଦୀ ଭୀରୁ ମୂଢ଼ ଅସ୍ଥିର ।
ଯେ ଯୋଧ ଅବଜ୍ଞା କରେ   ଏ ସମସ୍ତେ ସଂଗ୍ରାମରେ
ଅନାୟାସେ ବଧ ଜାଣ ଭୂ ଏହାଙ୍କର ।
ଯେତେକାଳେ ଭୂତରେ ସେହି ।
ଗଡ ବେଢି ନ ଯତନ୍ତି ଉପାୟ କହି । ୧୭୦ ।
ନଦୀ ଅଦ୍ରି ବନ ବାଧି   ଯେତେ ମାର୍ଗ ଥିବ ଏଥି
ସାରସାଦ ସେନାପତି ତହିଁ କ ପେଷ ।
ତା ଶୁଣ ଯହେ ରୁଦ୍ଧିତ   ଚୂଳଦ୍ୱାରେ ଯେ ପୀଡ଼ିତ
ନଦୀ ମଧ୍ୟର ବନ ସଙ୍କଟ ଦେଶ ।
ଘୋର ଅଗ୍ନି ଭୟ ସଂତ୍ରାସ ।
ଯେଉଁ ଜନକୁ ବାଧଇ କ୍ଷୁଧା ପିପାସ । ୧୭୧ ।
ସାବଧାନ ନୋହେ ଯେହି   ଯେ ଭୋଜନେ ବ୍ୟଗ୍ର ହୋଇ
ବ୍ୟାଧ୍ୟ ଦୁର୍ଭିକ୍ଷ ପୀଡ଼ିତ ସେ ଜନ ହୋଇ ।
ଅସଂସ୍ଥିତ ଅଳ୍ପ ବଳ   ବୃଷ୍ଟି ବାତରେ ଅକୁଳ
ପଙ୍କ ଧୂଳି ଜଳ ଛନ୍ନ ଯେହୁ ହୁଅଇ ।

ଅତି ବ୍ୟସ୍ତ ଯେ ଖଣ୍ଡ ଗ୍ରସ୍ତ ।
ଏରୂପେ ଯେ ପର ସୈନ୍ୟ ସେ ହୋଇ ହତ । ୧୬୨ ।
ଯେ ରାତି ହାଣନ୍ତି ଉଠି   ରାତ୍ରିରେ ଜାଗର କରି
ଯେ ଜନ ଶ୍ରମରେ ଶ୍ରାନ୍ତ ଦିବସେ ଶୁପ୍ତ ।
ଯେ ନିଦ୍ରା ବ୍ୟାକୁଳ ହୋଇ   ଅନାୟାସେ ସେ ମରଇ
ଏହିହେତୁ ପ୍ରମାଣ ସେ ତା ବଳ ହତ ।
କରି ଯାଇ ରାତ୍ରି କାଳରେ ।
ସେରୂପେ ସମସ୍ତ ଜଗି ମାରି ଦିବାରେ । ୧୬୩ ।
ସେରୂପେ ବିଚାର କଲେ   ରାଏ ଦିବସ ମାଇଲେ
ଚିତ୍ରବର୍ଣ୍ଣ ସୈନ୍ୟ ସେନାପତି ପଡିଲେ ।
ଏଥୁଅନ୍ତେ ଚିତ୍ରବର୍ଣ୍ଣ   ହୋଇ ବିଷଣ୍ଣ ବଦନ
ମନ୍ତ୍ରିବର ଦୀର୍ଘଦରଶୀଙ୍କ ପୁଚ୍ଛିଲେ ।
ବାବୁ କପାଁ ମତେ ଛଡୁଛନ୍ତି ।
ମୋର ଅବିନୟ କି ବା କି ଦେଖିଅଛ । ୧୬୪ ।
ତାହା କହୁଥାଇ ଶୁଣ   ଅହେ ମନ୍ତ୍ରିବର ପୁଣ
ରାଜ୍ୟାତ ମୋହର ବୋଲି ସ୍ଥିତ ଅଯୁକ୍ତ ।
ଯେବେ ଅବିନୟ ଥାଇ   ଲକ୍ଷ୍ମୀଙ୍କି ନାଶ କରଇ
ଯେହ୍ନେ ଜରା ରମ୍ୟରୂପ କରଇ ହତ ।
ବିନୟୀ ଯେ ଲକ୍ଷ୍ମୀଙ୍କି ପାଇ ।
ପଥ୍ୟ ଭୋଜୀ ସୁଖ ଆରୋଗ୍ୟକୁ ଭଜଇ । ୧୬୫ ।
ଅଭ୍ୟାସ କରଇ ଯେହ୍ନେ   ବିଦ୍ୟାବନ୍ତ ହୋଏ ସେହ୍ନେ
ବିନୟୀ ଯେ ଧନ ଅର୍ଥ ଧର୍ମକୁ ପାଇ ।
ଗୃଧ୍ର କହଇ ହେ ଦେବ   ଅବିଦ୍ୟାବନ୍ତ ଯେ ହେବ
ସେ ରାଜା ବିଜ୍ଞ ବୃଦ୍ଧକୁ ଯେବେ ସେବଇ ।

ବଡ଼ ସମ୍ପତ୍ତି ସେ ଭଜଇ ।
ଯେସନେ ଜଳ ପାଖ ତରୁ ବୃଦ୍ଧିକି ପାଇ । ୧୬୬ ।
ସ୍ତ୍ରୀ ସଂସର୍ଗ ମଦ୍ୟପାନ   ମୃଗୟା ଦ୍ୟୁତ କରଣ
ଅର୍ଥ ଦୋଷ ଯେ ବଚନ ଦଣ୍ଡ ପାରୁଷ୍ୟ ।
ଏମାନେ ରାଜ ବ୍ୟସନ   କରନ୍ତି ରାଜାଙ୍କୁ ହୀନ
କେବଳ ନୀତି ଶୂରତା ଲକ୍ଷ୍ମୀର ବାସ ।
କେବଳ ସାହସାବଲମ୍ବ ।
କରିବାରୁ ଫଳ ମିଳିନ୍ତି ଅବଲମ୍ବ । ୧୬୭ ।
ତୁମ୍ଭେ ପ୍ରବଳ ଉତ୍ସାହ   ଧରିଣ କଲ ବିଗ୍ରହ
ମୋର ବଚନର ଅବଜ୍ଞା ଭର୍ତ୍ସନା କଲ ।
ଦୁର୍ବିଚାରେ ଯେଉଁ ଫଳ   ଅନୁଭବ ହେଲା ତୋର
ଯେ ହେଲା ହେଉ ଏବେତ ବଚନ କର ।
ଅଛି ଯାହାର ଦୁର୍ବିଚାର ।
ସବୁ ନୀତି ଦୋଷର ସେ ହୋଏ ଆଧାର । ୧୬୮ ।
କେଉଁ ଅପଥ୍ୟ ଭୋଜକ   ରୋଗ ଛାଡ଼ ଯାଇଛି କି
ଲକ୍ଷ୍ମୀ ହେଲେ କେଉଁ ଲୋକ ଗର୍ବୀ ନୁହଇ ।
କାହାକୁ ମୃତ୍ୟୁ ନ ମାରେ   ନ ପଡେ କେ ସ୍ତ୍ରୀ ବଶରେ
ସର୍ବଥା ଦୁର୍ଣ୍ଣୟ ପୂର୍ଣ୍ଣ ଶିର ଜାଣଇ ।
ବିଷାଦ ହର୍ଷକୁ ଜାଣଇ ।
ହେମାଗମ ଶରଦ ଧର୍ମକୁ ଭାଙ୍ଗଇ । ୧୬୯ ।
ସେହି ହେତୁରୁ ମୋ ମନ   ବଚନର କଲି ତ୍ୟଜନ
ବୁଦ୍ଧିହୀନ ନୋହେ ଯେବେ ଶାସ୍ତ୍ର ବଚନରେ ।
କର୍ପା କଲି ଅନାଦର   ବଚନରେ ତିରସ୍କାର
ଏଣୁ ଛାଡିଲି ମୁଁ ବୁଦ୍ଧି ନାହିଁ ଯାହାରେ ।

ତାର ଶାସ୍ତ୍ର ଅବା କି କରେ ।
ଦର୍ପଣ କି କରେ ନେତ୍ରହୀନ ଜନରେ । ୧୮୦ ।
ତେଣୁ ମୁହିଁ ତୁନି ହେଲି   ଆଉ କିଛି ନ କହିଲି
ଶୁଣି ରାଜା ହସ୍ତ ଯୋଡ଼ି କହେ ବଚନ ।
ଏ ଯେ ଅପରାଧ ମୋର   କ୍ଷମା କର ଏକ ବାର
ବର୍ତ୍ତମାନେ ଯେଉଁ ରୂପେ ବଳ ଚେତଣ ।
ଯେରୂପରେ ବିନ୍ଧ୍ୟାଚଳକୁ ।
ଲେଉଟି ମୁଁ ଯିବ କହ ସେ ବିଚାରକୁ । ୧୮୧ ।
ଗୃଧ୍ର ମନରେ ବିଚାର   କଉବା ଏ ପ୍ରତିକାର
ଯେଉଁ ହେତୁରୁ ଦେବତା ଗୁରୁ ଲେ ଗାଇ ।
ରାଜା ଯେ ରୋଗୀ ବ୍ରାହ୍ମଣ   ବାଳକ ବୃଦ୍ଧ ଯେ ଜନ
ଏତେ ଲୋକଠାରେ କ୍ରୋଧ ଉଚିତ ନୋହି ।
ହସି ପ୍ରକାଶରେ କହଇ ।
ଦେବ ତୃପ୍ତିକୁ ନ ପାଅ ଅଦ୍ୟାପି ହୋଇ । ୧୮୨ ।
ମୁଁ କହୁଛି ଦେବ ଶୁଣ   ମନ୍ତ୍ରୀମାନଙ୍କର ଗୁଣ
ଭେଦ ସନ୍ଧି ବିଗ୍ରହରେ ବୁଦ୍ଧି ତାଙ୍କର ।
ସନ୍ନିପାତେ ବୈଦ୍ୟ ଜାଣି   ଆଉ ସବୁ ପରମାଣି
ସାଧ୍ୟ କାର୍ଯ୍ୟରେ ଯେ ବୁଦ୍ଧି ନୋହେ କାହାର ।
ମୂର୍ଖ ବଡ ଆରମ୍ଭ କରେ ।
କରି ନ ପାରି ତାହାକୁ ମରେ ବ୍ୟଗ୍ରରେ । ୧୮୩ ।
ସୂକ୍ଷ୍ମ ବୁଦ୍ଧି ଯେଉଁ ଜନ   ସେ କାର୍ଯ୍ୟ କରେ ଏସନ
ଯେରୂପେ କାର୍ଯ୍ୟରେ ଶ୍ରମ ନୋହେ ତାହାର ।
ଅସାଧ୍ୟ କାର୍ଯ୍ୟ କରଇ   ନରାକୁଳ ଚିତ୍ତ ହୋଇ
ଏଣୁ କାର୍ଯ୍ୟ ସିଦ୍ଧି ହୋଇ ବୁଦ୍ଧି ଯାହାର ।

ମୂର୍ଖ ବ୍ୟର୍ଥ ଶ୍ରମ କରଇ ।
ପଙ୍କ ଖୋଳିଲେ ନାଙ୍କ ମୂଷା ଧରଇ । ୧୮୪ ।
ଯେଣୁ ଭୂମ୍ ପ୍ରତାପରେ ଦୁର୍ଗ ଭଙ୍ଗ କଲୁ ଖରେ
ଶୀଘ୍ର ରଖି ବଳ ଯେନ ଯିବ ସଙ୍ଗରେ ।
ରଜା କହେ ଏତେ ଅଳ୍ପ ବଳେ କ୍ରୁପେ ଅନଳ୍ପ
କାର୍ଯ୍ୟ ହେବ ଶୁଣି ଗୃଧ୍ର କହେ ରାଜାରେ ॥
ଦେବ ସବୁ ହେବ ଅନ୍ତର ।
ଅବଲମ୍ବ କରେ ଯେହ୍ନ ବଜସ୍ତ ଚାର । ୧୮୫ ।
ଏଥୁଅନ୍ତେ ବକଗୃର ହିରଣ୍ୟଗର୍ଭ ରାଜାର
କହିଲା ହେ ଦେବ ସ୍ୱଳ୍ପ ବଳ ସେ ରାଜ ।
ଗୃଧ୍ର ମନ୍ତ୍ରୀ ବଚନରେ ଅଛିବେ ସେହି ସଦ୍ଭରେ
ଆମ୍ଭ ଗଡ ଦ୍ୱାର ରୋଧ କରିବେ ଆଜ
ରାଜହଂସ କହଇ ଶୁଣି ।
ସବଳ ବର୍ତ୍ତମାନେ କ କରିବା ପୁଣି । ୧୮୬ ।
ଚକ୍ରବାକ ଶୁଣି କହ ଅଳ୍ପ ବଳ ହେଲେ ତହିଁ
ଅସାର କି ସାର ଏହା ବିଚାର କର ।
ଜାଣି ଯେ ଯାହାକୁ ଯୋଗ୍ୟ ଦୂବର୍ଣ୍ଣ ଦମ୍ବାଦ ଭୋଗ୍ୟ
ତାହାକୁ ତା ଦେଇ ସୈନ୍ୟ ସନ୍ତୋଷ କର ।
ସ୍ଥାନେ ଦେଲେ ହୁଅଇ ସାର୍ଥ ।
ଅସ୍ଥାନରେ ଯାହା ଦେଇ ସବୁ ସେ ବ୍ୟର୍ଥ । ୧୮୭ ।
ତାହା କହୁଥାଇ ଶୁଣ ଅମାର୍ଗରେ ଯେଉଁ ଜନ
ଯାଇ ସେ ପାଞ୍ଚ ଗଣ୍ଡାକୁ ଯେବେ ନ ଛାଡେ ।
ସ୍ଥାନରେ କୋଟିଏ ଧନ ଦେଇଣ ଆନନ୍ଦ ମନ
ହୋଇ ଯେଉଁ ରଜା ତାକୁ ଲକ୍ଷ୍ମୀ ନ ଛାଡେ ।

ଏହି ହେତୁ ରାଜା ସେ ସ୍ଥାନେ ।
ଦଅଇ ଧନକୁ ନ ଦଅଇ ଅସ୍ଥାନେ । ୧୮୮ ।
ଯାଗ ବିବାହ ବିପତ୍ତି   ମିତ୍ର ରକ୍ଷଣ ଯେ କାର୍ଯ୍ୟ
କାରଣ କର୍ମ ମହତ୍ତ୍ୱ ଶତ୍ରୁର କ୍ଷୟ ।
ନିର୍ଦ୍ଧନ ବନ୍ଧୁ ଯେ ପ୍ରୀତ   କାନ୍ତ ଯେଉଁ ଭାର୍ଯ୍ୟା ସାଧ୍ୱୀ
ଏତେଠାରେ ରାଜାଙ୍କର ବହୁତ ବ୍ୟୟ ।
ମୂର୍ଖ ସବୁ ବ୍ୟୟ ଭୟରେ ।
ନ ଦେଲା ହେତୁରୁ ଭଟ୍ଟ୍ୟ ପଳାଇ ଡରେ । ୧୮୯ ।
ରାଜା କହେ ଏ ସମୟେ   ଅତି ବ୍ୟୟ ଯୁକ୍ତ ନୋହେ
ଯେଣୁ ବିପତ୍ତିବାରଣେ ଧନ ରଖଇ ।
ମନ୍ତ୍ରୀ କହେ ଶିରବନ୍ତ   ଲୋକ ନୁହେ ବିପଦ୍ଗତ
ରାଜା କହେ କଦାଚିତ ସମ୍ପତ୍ତି ଯାଇ ।
ମନ୍ତ୍ରୀ କହେ ସଞ୍ଚିତ ଅର୍ଥ ।
ନ ଦେଇ ନ ଖାଇ ଯେବେ ହୁଅଇ ବ୍ୟର୍ଥ । ୧୯୦ ।
ଦେବ ଛାଡ଼ଣ କାର୍ପଣ୍ୟ   ସୁଯୋଧଙ୍କୁ ଦିଅ ଧନ
ଦେଲେ ସେ ପରକ୍ଷେତ୍ରରେ ସନ୍ତୋଷ ହୋଇ ।
ଯେ କୁଳୀନ ଯୋଧ ଥାନ୍ତି   ଯୁଦ୍ଧେ ପ୍ରାଣକୁ ଛାଡ଼ନ୍ତି
ତାଙ୍କ ବଳେ ଶତ୍ରୁ ବଳ ପଳାଇ ଯାଇ ।
ଦିଅ ତୁମ୍ଭେ ବେଗରେ ଧନ ।
ନ ଦେଲେ ଯୁଦ୍ଧରେ ଯୋଦ୍ଧା ନ କରେ ମନ । ୧୯୧ ।
ସତ୍ୟ ତ୍ୟାଗ ଶୂରପଣ   ନୃପଙ୍କର ଏତେ ଗୁଣ
ଏତେ ଦୁର୍ଗମାନେ ଥିଲେ ଶତ୍ରୁ ମାରଇ ।
ଏତେ ଗୁଣେ ଯେହୁ ହୀନ   ଯୁଦ୍ଧ କରଇ ରାଜନ
ସେ ନଷ୍ଟପ୍ରାୟ ଲୋକନିନ୍ଦା ସ୍ଥାନ ହୁଅଇ ।

ଅମାତ୍ୟମାନଙ୍କୁ ଡାକଣ ।
ଧନ ଅଲଙ୍କାର ଦେଇ କର ଗ୍ରହଣ । ୧୯୬ ।

ଯେଉଁ ରାଜାଙ୍କୁ ଯେ ମନ୍ତ୍ରୀ ନବାରଇ କହି ନୀତ
ଯେ ତାର ସୁଖରେ ସୁଖୀ ଦୁଃଖୀ ତା ଦୁଃଖେ ।
ସେ ବଣ୍ୟସ୍ତ ମନ୍ତ୍ରୀ ଜାଣ ତାଙ୍କୁ ସମର୍ପିବ ପ୍ରାଣ
ଧନ ଏରୂପରେ କଲେ ସେ ରାଜା ସୁଖେ ।
କିଛୁ ନ ପାଇ ସେ ଅକାର୍ଯ୍ୟ ।
ଯେ ବଣ୍ୟସ୍ତ ମନ୍ତ୍ରୀ ଯେନ କରଇ କାର୍ଯ୍ୟ । ୧୯୩ ।

ଧୂର୍ତ୍ତ ନାରୀ ଶିଶୁ ଯାର ମନ୍ତ୍ରୀ ହୁଅନ୍ତି ରାଜାର
ସେ ରାଜା ଅନ୍ୟାୟେ ସଦା ଚଳିତ ହୋଇ ।
କାର୍ଯ୍ୟ ସମୁଦ୍ରେ ବୁଡଇ ଅତଣେ ଚଞ୍ଚଳ ହୋଇ
ବାତକ୍ଷିପ୍ତ ପୋତ ପ୍ରାୟ ଅବଶ ହୋଇ ।
ଯାହା ଭୁଲେ ଯାର ଉଦୟ ।
ସେ ରାଜା ସେ ମନ୍ତ୍ରୀ ତାରେ ନୋହେ ନିର୍ଦ୍ଦୟ । ୧୯୪ ।

ଏଥିଅନ୍ତେ କାକ ଅସି ପ୍ରଣାମ କରଣ ଭୂଷି
ମେଘବର୍ଣ୍ଣ ବୋଲେ ଦେବ ସନ୍ତୋଷ ହୋଇ ।
ଆଜ୍ଞା ଦଅ ଦେବ ଅଜ କରିବ ତୁମ୍ଭର କାର୍ଯ୍ୟ
ଶତ୍ରୁଙ୍କୁ ମାରିବ ଦ୍ୱାରେ ବାହାର ହୋଇ ।
କଲେ ଏହା ତୁମ୍ଭର ଋଣ ।
ଶୁଝିକରି ଦେବ ମୁହିଁ ହେବ ଅନୃଣ । ୧୯୫ ।

ଚକ୍ରବାକ ବୋଲେ ଦେବ ଏ କଥା କେବେ ନୋହିବ
ଯେବେ ଗଡ଼ରୁ ବାହାର ହୋଇ ଯୁଝିବ ।
ତେବେ ଗଡ଼ର ଆଶ୍ରୟ ବ୍ୟର୍ଥ ହେବ ମହାଶୟ
ଜଳରୁ ବାହାର ନକ୍ର କ୍ଷୟ କରିବ ।

କଲ ଯେବେ ମହା ଅନ୍ୟାୟ ।
ହେବ ଜନବନର୍ଗତ ସିଂହର ପ୍ରାୟ । ୧୧୬ ।
ପୁଣି ବୋଲେ ମହାରାଜ   ଯାଅ ଯୁଦ୍ଧ ଦେଖା ଅଛ
ଯେଣୁ ରାଜାବଳ ଅଗେ ଯୁଝନ୍ତି ।
ସ୍ୱାମୀ ଯେବେ ସଙ୍ଗେ ଥାଇ   କୁକ୍କୁର ସିଂହ ହୁଅଇ
ସ୍ୱାମୀ ଅଭାବରେ ସିଂହ କୁକ୍କୁର ହୋଇ ।
ଏହା ବୋଲି ସମସ୍ତେ ଗଲେ ।
ଗଡ଼ଦ୍ୱାରେ ବଡ ଯୁଦ୍ଧ ମିଳିଣ କଲେ । ୧୧୭ ।
ପରଦିନ ରାଜ ଚିତ୍ର   ବର୍ଣ୍ଣି କହେ ଅହେ ତାତ
ତୁମ୍ଭର ପ୍ରତିଜ୍ଞା ତୁମ୍ଭେ ନିର୍ବାହ କର ।
ଶୁଣି ଗୃଧ୍ର କହେ ପୁଣ   ଅହେ ରାଜା ତୁମ୍ଭେ ଶୁଣ
ଚୋର ହୁଅଇ ଯେ ସୈନ୍ୟ ଜଣା ଯାହାର ।
ଯା ନାୟକ ମୂର୍ଖ ବ୍ୟସନୀ ।
ଅରକ୍ଷିତ ଭୀରୁ ଯୋଦ୍ଧ ଏ ଦୁର୍ଗ ହାନି । ୧୧୮ ।
ସେ ସବୁ ଏଠାରେ ଅଛି   ବିଚାର ନ କର କିଛି
ଭେଦ ଚିର ଆରାଧନ ଦୁଷ୍ଟ ପୁରୁଷ ।
ଅତିପୀଡା ଏହି ଗୃହ   ଦୋଷ ଥିଲେ ଗଡ଼ ମଧ୍ୟ
ତହିଁରେ ସାମର୍ଥ୍ୟ ଗୃହିଁ ଯତ୍ନ ଅବଶ୍ୟ ।
କର ତୁମ୍ଭେ ଏହି ବିଚାର ।
ରାଜା କହଇ ଏକଥା ଏରୂପେ କରି । ୧୧୯ ।
ଏଥୁ ଅନ୍ତେ ଅନୁଦିତ   ସୂର୍ଯ୍ୟର ହୁଅନ୍ତେ ପ୍ରାତଃ
କାଲେ ଗୃହଦ୍ୱାରେ ଯୁଦ୍ଧ ହୋଇନ୍ତେ ବହୁତ ।
ଗଡ଼ ଭିତର ଘରରେ   ବାୟସ ଏ ସମୟରେ
ଅଗ୍ନି ପକାଇ ପଳାଇଗଲା ତହିଁ ।

ଚିତ୍ରବର୍ଣ୍ଣଠାରେ ପ୍ରବେଶ ।
ଦେଖି ଚିତ୍ରବର୍ଣ୍ଣ ହେଲା ବଡ଼ ସନ୍ତୋଷ । ୧୦୦ ।
ଏଥିଅନ୍ତେ ହଂସ ସୈନ୍ୟ   ଦେଖିଣ ଅଗ୍ନି ଜ୍ୱଳନ
ଘୋଟିଲା ଘୋଟିଲା ଗଡ଼ ଏ କୋଳାହଳ ।
ଶୁଣିକରି ଦୁର୍ଗବାସୀ   ପଳାଇ ଅଇଲେ ଅସି
ହ୍ରଦରେ ପଶିଲେ ଯାଇଁ ଜଳ ଭିତର ।
ଏଣୁକରି ଯଥା କାଳରେ ।
ମନ୍ତ୍ରୀ ଯୁଦ୍ଧୁଁ ପଳାୟନ କରୁ ସଦ୍ଧରେ । ୧୦୧ ।
ରାଜହଂସ ସ୍ୱଭାବରେ   ମନ୍ଦ ମନ୍ଦ ଚାଲିବାରେ
ସେନାପତି ସାରସକୁ ଘେନି ରହିଲା ।
ଚିତ୍ରବର୍ଣ୍ଣ ଯେ ନୃପତି   କୁକ୍କୁଟ ତା ସେନାପତି
ସ୍ୱ ସୈନ୍ୟ ସହିତେ ସେ ଦୁହିଁଙ୍କ ବେଢିଲା ।
ତାହା ଦେଖି ସେ ରାଜହଂସ ।
କହେ ସାରସକୁ ନୁହ ନୁହ ମୋ ପାଁଇ ନାଶ । ୧୦୨ ।
ବର୍ତ୍ତମାନ ତୁମ୍ଭେ ଯାଅ   ଜଳରେ ପ୍ରବେଶ ହୁଅ
ତୁମ୍ଭେତ ପିବାକୁ ଶକ୍ତ କପାଁ ବଧିର ।
ମୋର ସୁତ ଚୂଡ଼ାମଣି   ତାକୁ ନେଇ ତୁମ୍ଭେ ସର୍ବ
ପକ୍ଷିମାନେ ମିଳି ରାଜାଭିଷେକ କର ।
ସର୍ବଙ୍କ ସମ୍ମତିକି ଘେନ ।
କହଇ ସାରସ ରାଜା ବଚନ ଶୁଣି । ୧୦୩ ।
ଏତେ କଠୋର ବଚନ   କପାଁ କହୁଛ ରାଜନ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ବିଜୟ ହେଉ ।
ମୁଁ ଯେ ଦୁର୍ଗ ଅଧିକାରୀ   ନେଉ ପଛେ ମୋତେ ମାରି
ଶତ୍ରୁ ମୋ ମାଂସ ରକତ ବାଟରେ ଖାଉ ।

କ୍ଷମାଦାତା ଯେ ଗୁଣଗ୍ରାହୀ ।
ଏ ସ୍ୱାମିକ ପାଏ ଯାର ସୁପୁଣ୍ୟ ଥାଇ । ୨୦୪ ।
ରାଜା କହେ ପୁଣ ଶୁଣି ଏକଥା ଏରୂପେ ପୁଣି
ଶୁଦ୍ଧ ଦକ୍ଷ ଅନୁରକ୍ତ ଭୃତ୍ୟ ଦୁର୍ଲଭ ।
ତୋହପର ଅନୁରକ୍ତ ନ ଦେଖଇ ଏଜଗତ
ଏଣୁ ଜାଣୁଛି ତୋ ଯେନ ପୃଥ୍ୱୀ ବାନ୍ଧବ ।
ହୋଇଥିଲି ମୁ ଖ୍ୟାତଯାଏ ।
ତୁମ୍ଭେ ମଲେ କି କରିବ କହ ଉପାୟେ । ୨୦୫ ।
ସାରସ କହଇ ଶୁଣ ଅହେ ରାଜା ମୋ ବଚନ
ସମରୁ ପଳାଇ ଯେ ସେ ନିନ୍ଦ୍ୟ ଜୀବନ ।
ଜନ୍ତୁମାନଙ୍କ ମରଣ ଅବଶ୍ୟ ହୋଇବ ଜାଣ
କର୍ପି ବୃଥା ମୋର ଯଶ କର ମଳିଣ ।
ପର ଅର୍ଥେ ଜୀବନ ବ୍ୟୟ ।
ହୋଇ ଯାର ତାର ପୂର୍ବେ ପୁଣ୍ୟ ସଂଚୟ । ୨୦୬ ।
ତୁମ୍ଭେ ଯେ ସ୍ୱାମୀ ରାଜନ ସର୍ବଦା ତୁମ୍ଭ ରକ୍ଷଣ
କରିବାର ଅମ୍ଭମାନଙ୍କର ଉଚିତ ।
ଯେଣୁ ସ୍ୱାମି ପରତ୍ୟକ୍ତ ସମ୍ପୃଦ ହେଲେ ଅମାତ୍ୟ
ନାଶ ଯାଇ କ୍ଷଣକରେ ଏ କଥା ସତ୍ୟ ।
ଯାହାର ଅସ୍ତ୍ରିଷ ନ ଥାଇ ।
ତାହାଠାରେ ଧନ୍ୱନ୍ତରୀ କିବା କରଇ । ୨୦୭ ।
ଯେହ୍ନେ ରବି ଉଦୟରେ ପଦ୍ମ ବିକାଶକୁ ଧରେ
ଅସ୍ତ ହେଲେ ସଂକୁଚିତ ସେକ୍ଷଣେ ହୋଇ ।
ତେହ୍ନେ ରାଜାର ଉଦୟ ହେଲେ ଲୋକ ସମୁଦୟ
ଅସ୍ତକୁ ପାଇଲେ ଲୋକ ନାଶକୁ ପାଇ ।

ରାଜାଧୀନ ସମସ୍ତ ଲୋକ ।
ରାଜା ବିନା ସେ ସମସ୍ତେ ହୋନ୍ତି ସଶୋକ । ୧୦୮ ।
ଏହି ସମୟେ କୁକ୍କୁଟ ଅଧିକ ହୋଇ ଉତ୍କଟ
ରାଜହଂସେ ନଖ ମୁଖ ପ୍ରହାର କଲା ।
ଏଥୁଅନ୍ତେ ଥିଲା ପାଣ ସେନାପତି ଯେ ସାରସ
ସେ ରାଜାଙ୍କୁ ପିଠି କରି ଆସି ରହିଲା ।
ପୁଣି ପୁଣି ସେହି କୁକ୍କୁଟ ।
ନଖ ଦନ୍ତ ପ୍ରହାରରେ କଲା ବିକଟ । ୧୦୯ ।
କୁକ୍କୁଟର ନଖ ଦନ୍ତ ପୀଡିତ ହୋଇଲା ଗାଏ
ତେବେ ଆପଣା ଦେହରେ ରାଜାଙ୍କୁ ଘରି ।
ପକାଇଲା ଜଳେ ନେଇ ପୁଣି କୁକ୍କୁଟ ଗୋଡାଇ
ଚଞ୍ଚୁ ପ୍ରହାରରେ ସେନାପତିଙ୍କ ମାରି ।
ତହୁଁ ମେଳ ପକ୍ଷୀ ସକଳ ।
ସେନାପତି ସାରସଙ୍କୁ କଲେ କବଳ । ୧୧୦ ।
ଏଥୁଅନ୍ତେ ଚିତ୍ରବର୍ଣ୍ଣ ହଂସର ଗଡେ ପଶିଣ
ଗଡେ ଥିଲା ଯେତେ ଦ୍ରବ୍ୟ ତାଙ୍କୁ ବୁହାଇ ।
ସର୍ବେ ଜୟ ଶବ୍ଦ କଲେ ଆନନ୍ଦ ହୋଇ ସେ ଗଲେ
ଯାଇ ନିଜ କଟକରେ ପ୍ରବେଶ ହୋଇ ।
କଲେ ପୁଣି ଦ୍ୱିଜ ଭୋଜନ ।
ରାଜା ମୃଗୋହିଙ୍କ ସାଇ କଲା ଶୟନ । ୧୧୧ ।
ଏଥୁଅନ୍ତେ ରାଜପୁତ୍ର ଶୁଣିଣ ଅତି ବଚିତ୍ର
କହିଲେ ଏ ରାଜହଂସ ବଳ ମଧ୍ୟରେ ।
ଏ ସାରସ ପୁଣ୍ୟବନ୍ତ ଯେଣୁ ଦେହ ଦେଇ ଅନ୍ତ-
କର ମୃଖୁଁ ସ୍ୱାମିଙ୍କ ରଖିଲା ଯୁଦ୍ଧରେ ।

ଏକଥାତ ଶାସ୍ତ୍ରେ କହୁଛୁ ।
ବର୍ତ୍ତମାନରେ ଏହଥା ଠିକ ହୋଇଛୁ । ୨୧୨ ।
ଶଉ ଯାହା ଜନ୍ମ କଉ ସମସ୍ତେ ଗାଇର ପଉ
ହୋଇ ବଳିବର୍ଦ୍ଦ ହୋଇଣ ସେ ରହନ୍ତି ।
ମହା ଶୃଙ୍ଗ ଚଳୁଥାଇ କେହି କରୂପେ ହୁଅଇ
ସର୍ବେ ମହା ବୃଷଭ୍ ସଂଜ୍ଞା କ ଭଜନ୍ତି ।
ଏହିରୂପେ ଏହି ସଂସାରେ ।
କେଉଁଠାରେ କଏ ଅବା ଥିବ ଲୋକରେ । ୨୧୩ ।
ବିଷ୍ଣୁଶର୍ମା କହେ ପୁଣି ଏ ଯେ ପକ୍ଷି ଚୂଡ଼ାମଣି
ମହାସତ୍ୱ ସାରସ ଧର୍ମରେ କଣିଣ ।
ବଦ୍ୟାଧରୀ ପରିଜନ ଅକ୍ଷୟ ଲୋକରେ ସ୍ଥାନ
ସେ ସ୍ଥାନରେ ରହେ ବହୁ ବରଷଗଣ ।
ଯେ ଯୁଦ୍ଧରେ ସ୍ୱାମି ନମିତେ ।
ମରନ୍ତି ସ୍ୱର୍ଗେ ବସନ୍ତି ସେ କଳ୍ପ ଶତେ । ୨୧୪ ।
ଶତ୍ରୁମାନେ ବେଢ଼ିକଉ ରଣରେ ଯାହାକୁ ମାଉ
ସେ ଯେବେ ମରଣକାଳେ କହିଇ ଦୀନ ।
ଅଗରୁ ପଛୁ ନ ଯାଇ ମନରେ ମୁଁ ନ ବୋଲଇ
ସ୍ୱାମି ଭକ୍ତି ଉପକାରେ ଥାଇ ତା ମନ ।
ସେହି ନର ସ୍ୱର୍ଗକୁ ଯାଇ ।
ଏ ଗୁଣ ନ ଥାଇ ଯାର ନରକ ହୋଇ । ୨୧୫ ।

ଇତ ଶ୍ରୀ ହିତୋପଦେଶେ ମାତସାରେ ବିଗ୍ରହ କଥନେ
ତୃତୀୟ କଥା ସଂଗ୍ରହଃ ।

---

# ସନ୍ଧି ।

ପୁଣି ବିଷ୍ଣୁଶର୍ମ୍ମା କହେ ଶୁଣ ରାଜସୁତ ଅହେ
ଶୁଣିଲଟ ବିଗ୍ରହକୁ ଯଥାର୍ଥ କରି ।
ଏବେ ସନ୍ଧି କହୁଥାଇ ଶୁଣ ତୁମ୍ଭେ ମନ ଦେଇ
ଶୁଣିଲେ ସେ ବୁଦ୍ଧି ହୋଏ ଯାହାର କାହିଁ ।
ତାହାର ଏ ସଂଗ୍ରହ ଶ୍ଳୋକ ।
ଏଥିରେ ବିଗ୍ରହର କଥା ଅଛି ଅନେକ । ୧ ।
ବଡ ସଂଗ୍ରାମ ହୁଅନ୍ତେ ବହୁତ ସୈନ୍ୟ ମରନ୍ତେ
ଦୁଇ ରାଜାଙ୍କର ହେଲା ମହା କଦର ।
ଦେଖି ମନ୍ତ୍ରୀ ଗୃଧ୍ର ଚକ୍ର-ବାକ ଶକ୍ତ ଗୁରୁ ଶୁନି
ସମାନ ବୁଦ୍ଧି ଏ ଦୁହେଁ କଲେ ବିଗ୍ରହ ।
ବିଗ୍ରହଣ କାଞ୍ଚନ ସନ୍ଧି ।
କଲେ ଦୁଇ ରାଜାଙ୍କର ବିରୋଧ ବନ୍ଧ । ୨ ।
ଶୁଣିଣ ରାଜକୁମର ପଚାରନ୍ତି ଦ୍ୱିଜବର
ହେଲା ଦୁଇ ରାଜାଙ୍କର କାହିଁପେ ପ୍ରୀତି ।
କହ କିଛି ଦେବା ନେବା ଅବା ପରସ୍ପର ସେବା
କଉଣ ପ୍ରୀତି କରକ କହୁଛ ନୀତି ।
ଦୁହେଁ କଲେ କାଞ୍ଚନ ସନ୍ଧି ।
ଶୁଣିଣ ଆମ୍ଭର ମନ ହେଉଛି ଧନ୍ଦ । ୩ ।
ଶୁଣି ବିଷ୍ଣୁଶର୍ମ୍ମା କହେ ଶୁଣ ରାଜପୁଏ ଅହେ
ଗନ୍ଧ ମଲ୍ଲ ଉପରୁ ସେ ହଂସ ରାଜନ ।

ବିଏବେ ଅମ୍ଭ ଗଡ଼ରେ   ଅଗ୍ନି ପକାଇଲା ଘରେ
ବିବା ପର ଅମ୍ଭ ଦୁର୍ଗ ନିବାସୀ ଜନ ।
ଅବା କେହି ବିପକ୍ଷ ପକ୍ଷ ।
ଅସି କରି କଲା ଏତେ କର୍ମ ଅଶକ୍ୟ । ୪ ।
ଚକ୍ର କହଇ ବଚନ   ତୁମ୍ଭର ଯେ ଅକାରଣ
ବନ୍ଧୁ ଯେ ଭୃତ୍ୟ ସହିତେ ଦଣ୍ଡ ଯେ ନାହିଁ ।
ମୁଁ ଜାଣୁଛି ତାର ଏହି   କର୍ମ ନାହିଁ ଆଉ କେହି
ଶୁଣି ରାଜା କ୍ଷଣେ ଚିନ୍ତା କରି କହଇ ।
ଏକଥା ଏରୂପେ ହୁଅଇ ।
ମନ୍ତ୍ରି ଦୋଷ କିଛି ନାହିଁ ଦୈବର ଏହି । ୫ ।
ଯେ ସୁଘଟ ହୋଇଥାଇ   ସେ କାର୍ଯ୍ୟ କ୍ଷଣକେ ନୋହି
ଦଇବରୁ ବଡ଼ କେହି ନାହିଁଟି ଜାଣ ।
ଦଇବ ଯାହା କରଇ   ତାହା କେହି ନ ପାରଇ
ଦଇବ ସେ ହର୍ତ୍ତା କର୍ତ୍ତା ଧାତା ପ୍ରମାଣ ।
ପୂର୍ବ ଜନ୍ମ କର୍ମ ଦଇବ ।
ଏହି ହେତୁରୁ ମନୁଷ୍ୟ ସବୁ ସହିବ । ୬ ।
ମନ୍ତ୍ରୀ ବୋଲେ ଏ ବଚନ   ଶାସ୍ତ୍ରରେ କହନ୍ତି ଶୁଣ
ବିଷମ ଦଶାକୁ ପ୍ରାପ୍ତି ଯେବେ ଏ ନର ।
ନିନ୍ଦା କରେ ଦଇବକୁ   ନ ଜାଣେ କର୍ମ ଦୋଷକୁ
ଯେଣୁ ସେ ମୂରୁଖ ନାହିଁ ତାର ବିଚାର ।
ଯେଉଁ ଲୋକ ମିଶି ବଚନ ।
ନ କରଇ ତାର ଦଶା ଏରୂପେ ଜାଣ । ୭ ।
ହିତକାରୀ ମିଶିଜନ   ଯେ ଉପଦେଶ ବଚନ
ନ କରଇ ଯେଉଁଜନ ସେ ପଛେ ପୁଣି ।

ମରଇ ଯେଉରୂପେ କୂର୍ମ   କାଣ୍ଠରୁ ହୋଇଣ ଭ୍ରମ
ପଡ଼ିଣ ଭୂମିରେ ଗଲା ପ୍ରାଣ କ୍ଷେଣି ।
ରାଜା ବୋଲେ କହ କରୂପେ ।
ଚକ୍ରବାକ କହୁଛି ସେ କଥା ସ୍ୱରୂପେ । ୮ ।
ନାମରେ ଫୁଲ୍ଲ ଉତ୍ପଳ   ମଗଧ ଦେଶରେ ସର
ତହିଁ ଦୁଇ ହଂସ କୂର୍ମ ଏକଦେହ ମିତ ।
ଥାଆନ୍ତି ଏକ ଦନରେ   କୈବର୍ତ୍ତ ଆସି ସେଠାରେ
କହଲେ ଆଜ ରାତ୍ରରେ ହୋଇ ସଙ୍ଗତ ।
ରହିବା ସେ କାଲି ସକାଳେ ।
ମାରିବା ମତ୍ସ୍ୟ କଚ୍ଛପ ଯେ ଥିବେ ଜଳେ । ୯ ।
କୂର୍ମ ସେ ବଚନ ଶୁଣି   ହଂସଙ୍କୁ କହେ ଏ ବାଣୀ
ଦୁଇ ମିତ ଶୁଣିଲ ଦାସଙ୍କ ବଚନ ।
କି କରିବ କହ ମୁହିଁ   ବର୍ତ୍ତମାନେ ତୁମ୍ଭେ ଦୁଇ
ରକ୍ଷା କଲେ ଯତ୍ନେ ରହିବ ମୋହର ।
ଶୁଣି ହଂସ [illegible] କହିଲେ
[illegible] କି ନ କରିବେ ବାନ୍ଧବ ଭଲେ । ୧୦ ।
[illegible] ନେ ହେବ ଉଚିତ   [illegible]
[illegible]
[illegible]
[illegible]
[illegible]

[illegible]

ଥିଉ ଏକ ମତ୍ସ୍ୟ ଥାଇ　ଯଭିବଷ୍ୟ ନାମ ବହି
　　ଏ ତିନହେଁ ଥିଲେ ଏକ ସର ଉଦରେ ।
　　　　ପୂର୍ବ ଦୁହେଁ ସୁଖେ ଜୀଇଲେ ।
　　ଯଭିବଷ୍ୟ ଅବଶ୍ୟରେ ବଳମ୍ବେ ମଲେ । ୧୨ ।
ଶୁଣି ହଂସ ଦୁହେଁ କହି　ଏ କଥା କରୂପେ ହୋଇ
　　ଶୁଣି କୂର୍ମ କହୁଅଛି ଶୁଣ ହେ ମିତ ।
ପୂର୍ବକାଳେ ଏହି ସରେ　ଏହିରୂପରେ ଧୀବରେ
　　ମତ୍ସ୍ୟ ମାଇବାକୁ ଅସି ହେଲେ ସଗତ ।
　　　　ତିନ ମତ୍ସ୍ୟ ବଶ୍ୟର କଲେ ।
　　ତହିଁ ମଧ୍ୟେ ଅନାଗତ ବଧାତା ବୋଲେ । ୧୩ ।
ମୁଁ ଯାଉଛି ଏହିକ୍ଷଣି　କହିଗଲା ସେହିକ୍ଷଣି
　　ଅନ୍ୟ ଜଳାଶୟରେ ସେ କଲା ନିବାସ ।
ପ୍ରତ୍ୟୁତ୍ପନ୍ନମତି କହି　ଅଗତ କାର୍ଯ୍ୟକୁ ଜାଣି
　　ନ ଶଙ୍କାରେ ବିପତ୍ତି ପଡ଼ିଲେ ଉଦାସ ।
　　　　ନ୍ତ୍ରି ଯେ ସେ ବୁଦ୍ଧିମନ୍ତ ।
　　ଅମ୍ଭେ ବିପତ୍ତି ଜାଣିଲେ କରୁବା ହେମନ୍ତ । ୧୪ ।
ବିପତ୍ତି ପ୍ରବେଶ କଲେ　ସେହି ଜନ ବୁଝି [illegible]
　　ତାର ପ୍ରତିକାର କରିବ [illegible]
[illegible]
　　[illegible]
　　　　[illegible]
　　[illegible]

ପଦ୍ମପ୍ରଭମତ କହି   ଏକ ବଣିକାରୁ ଥାଇ
ତାର ଭାର୍ଯ୍ୟା ଜାର ସଙ୍ଗେ କରେ ବିହାର ।
ପ୍ରତିଦିନ କରେ ଏ ଖେଳ ।
ହେନେହେଁ ତାହାର ଖେଳ ନ ଦେଖେ ପତି । ୧୬ ।
ଏକଦିନେ ସେ ଜାରର   ମୁଖେ ଚୁମ୍ବନ ଦେବାର
ଦୂରୁଁ ତା ପତି ଦେଖିଲା ତାହା ଜାଣିଲା ।
ଯାଇଁ ପାଇ ତାର ଆଗେ   କହିଲା ବଡ଼ ସରାଗେ
ଏମନ୍ତ ଭୃତ୍ୟଙ୍କୁ ରଖିବାର ନୋହିଲା ।
ନର ହିଙ୍ଗୁ ଏହୁ ଚୋରର ।
ମୁଖକୁ ଚୁମ୍ବି ଏହାର ଜାଣିଲି ମୁହିଁ । ୧୭ ।
ତାହାର ବଚନ ଶୁଣି   କୋପେ ଭୃତ୍ୟ କହେ ବାଣୀ
ଯାର ଘରେ ସ୍ତ୍ରୀରୂପ ପ୍ରତାପ କରଇ ।
ତା ଘରେ ମୁଁ କି ରହିବି   ଆଜ ଆନଠାକୁ ଯିବି
ଆନକୁ ସେବା କରିବି ବୋଲିଣ ଯାଇଁ ।
ଗୃହ ପତି ଯାଇଁ ଧଇଲା ।
ପ୍ରବୋଧିଲା ଭଜ ତାକୁ ଘରକୁ ନେଲା । ୧୮ ।
ବଣିକାରୁ ଭାର୍ଯ୍ୟା ଜାରେ   ଯେରୂପରେ କଲା ପାର
ବିପତ୍ତି କାଳରେ ସେହିରୂପରେ ମୁହିଁ ।
କରିବି ଯିବା ଉପାୟ   ମୋର କଷ୍ଟ ନାହିଁ ଭୟ
ଏହା ଶୁଣି ଅଭିବର୍ଷ ମନ୍ତ୍ରୀ କହଇ ।
ଯେ ହେବାର ସେତ ହୋଇବ ।
ନୋହିବାର ଯେଉଁ କାର୍ଯ୍ୟ ସେତ ନୋହିବ । ୧୯ ।
ଏମନ୍ତ ବୋଲି ସେ ମିଳ   ହୋଇଲେ ନିଶ୍ଚିନ୍ତ ମନ
ଏ ସମୟେ କରିବର୍ଣ୍ଣ ଜାଲ ଫାନ୍ଦିଲା ।

ଓଠାଉ ନେଇ କୂଳକୁ ଦେଖିଲେ ଧୂର୍ତ୍ତ ମତ୍ସ୍ୟଙ୍କୁ
ତହିଁରେ ଗୋଟିଏ ମୃତ ପ୍ରାୟ ଦେଖିଲା ।
ତାଠକାରେ ଏ ମାଛ ମଲା ।
ବୋଲି ତା ଉପରୁ ଜାଲ କାଢିଣ ଦେଲା । ୧୦ ।
ପ୍ରତ୍ୟୁତ୍ପନ୍ନମତ ଜାଣି ମୋଠାରୁ ଜାଲ ଗଲାଣି
ଯେହ୍ନେ ମାଛ ଧର ବାଜ ଉଗୁରଁ ଯାଇ ।
ସେରୂପେ ଉଗୁରିଁ ଯାଇ ଜଳରେ ପଡଲା ଯାଇଁ
ଯଦ୍ଭବିଷ୍ୟ ଛଟପଟ ହେଲା ସେଠାରେ ।
ତାକୁ ବେକ ମୋଡଣ ମାର ।
କରେ ଧର ଖାଲୋଇରେ ଦେଲ ସେ ଭରୁ । ୧୧ ।
ତେଣୁ ବିଳମ୍ବ ନ କର ବେଗରେ ବନ୍ଦର କର
ଯାହା କଲେ ମୋହର ଜୀବନ ରହିବ ।
ସେ ଉପାୟ କହ ମୋତେ ଅହେ ହଂସ ଦୁଇ ମିତ୍ରେ
ନାହିଁ ସୁଁ ଯାହା କହୁଛ ତାହା କରନ୍ତ ।
ହଂସ ବୋଲେ କହ ତା ପୁଣି ।
'କୂର୍ମ ବୋଲେ କହୁଅଛି କର ତା ଶୁଣି । ୧୨ ।
ଯେରୂପେ ଅନ୍ୟ ହ୍ରଦରେ ପ୍ରବେଶ ହେବ ସହରେ
ସେରୂପେ ଉପାୟ କର ହଂସେ ତା ଶୁଣି ।
ତୁମ୍ଭେ ତଳେ ଯେବେ ଯିବ କୁଶଳ କେବେ ନୋହିବ
କୂର୍ମ ବୋଲେ ଶୁଣ ଧୀର କହୁଛି ପୁଣି ।
ଯେରୂପରେ ଗଗନେ ଯିବ ।
ସେରୂପେ ଉପାୟ କଲେ ପ୍ରାଣ ପାଇବ । ୧୩ ।
ଶୁଣି ହଂସ ଦୁହେଁ କହୁ ଏ ଉପାୟ କର ନୋହୁ
କୂର୍ମ କହେ ତୁମ୍ଭେ ଦୁହେଁ ଏରୂପେ କର ।

ଥଣ୍ଟେ କାଠ ଖଣ୍ଡେ ଧର ଗଗନ ମାର୍ଗରେ ଉଡ
ସେ କାଠକୁ ତୁଣ୍ଡେ ଧର ଯିବ ସତ୍ୱର ।
ମୁଁ ତୁମ୍ଭ ପକ୍ଷକୁ ସପକ୍ଷ ।
କର ଗଗନରେ ଯାଇ ହୋଇବ ରକ୍ଷ । ୬୪ ।
ଶୁଣି ହଂସ ଦୁହେଁ କହ ଭଲ ଉପାୟ ଏ ହୋଇ
କେବଳ ଉପାୟ କରୁ ଅପାୟ ହୋଇ ।
ଏକ ମୂର୍ଖ ବକ ଥିଲେ ଏରୂପେ ଉପାୟ କଲେ
ଦେଖୁଁ ଦେଖୁଁ ନକୁଳ ତା ପିଲାଙ୍କୁ ଖାଇ ।
ଯେ ପଣ୍ଡିତ ଉପାୟ କରେ ।
ସେ ବଟ୍ଟରେ ଅପାୟ ଉପାୟ ଭିତରେ । ୬୫ ।
ହଂସ ଦୁହିଁଙ୍କୁ କୂର୍ମ ପଚ୍ଚରଇ କଥା କ୍ରମ
ହଂସ ଦୁହେଁ କହନ୍ତେ ଉତ୍ତର ଧଥିରେ ।
ଗୃଧ୍ରକୂଟ ନାମ ଧର ବକମାନଙ୍କ ବହାର
ବୃକ୍ଷ କୋରଡ଼ରେ କୃଷ୍ଣ ସର୍ପ ବହରେ ।
ସେହୁ ସର୍ପ ବକ ବାଳକ ।
ଖାଇଲା ତା ଦେଖି ବକ କଲେ ସେ ଶୋକ । ୬୬ ।
ସେମାନଙ୍କ ଶୋକ ଶୁଣି କତ୍ତଣପି ବକ ଭଣି
ତୁମ୍ଭେମାନେ ମାଛ ଘେନ ନେଉଳେ ଯାଇ ।
ଧରମି ନକୁଳ ଗର୍ତ୍ତ ସର୍ପ ବକର ପର୍ଯ୍ୟନ୍ତ
ପଙ୍କ୍ତି ବିନ୍ଦରେ ତାଙ୍କୁ ପକାଅ ନେଇ ।
ମାଛ ଅନୁସର ନକୁଳ ।
ଆସିଣ ଦେଖି ଖାଇବ କୋଟରେ ବ୍ୟାଳ । ୬୭ ।
ତାହା ଶୁଣି ବକମାନେ ଗଲେ ସର୍ବେ ସାବଧାନେ
ମାଛ ଅଣି ଥାରମି ନକୁଳ ବବର ।

ଥୋଇଲେ ମନ୍ତ୍ରୀମାନଙ୍କୁ ବିଷଧର ବିବରକୁ
ବୋଲି ତାହା ଅନୁସରି ଗଲା ନକୁଳ ।
ସର୍ପକୁ ମାରଣ ଖାଇଲା ।
ବୃକ୍ଷେ ବକ ଧ୍ୱନି ଶୁଣି ବକ ଭୁଞ୍ଜିଲା । ୬୮ ।

ଏଣୁ ଉପାୟ ଚିନ୍ତାରେ ଅପାୟ ହୋଇବା ଦୂରେ
ତୁମ୍ଭଙ୍କୁ କହୁଛୁଁ ଅମ୍ଭେ ଏରୂପେ ଜାଣ ।
ଗଗନରେ ଅମ୍ଭେମାନେ ତୋତେ ନେଉଥିବାଁ ଜନେ
ଦେଖିକରି କିଛି ଯେ କହିବେ ବଚନ ।
ଯେବେ ଉତ୍ତର କହିବୁ ।
ତେବେ ସେହିଠାରେ ସେହିକ୍ଷଣି ମରିବୁ । ୬୯ ।

ଏହି ହେତୁରୁ ଏ ସ୍ଥାନ ଛାଡ଼ି ନ ଯା ଅନ୍ୟ ସ୍ଥାନ
ଥାଅ ଏହିଠାରେ ସୁଖେ ଅମ୍ଭ ସଙ୍ଗରେ ।
କୂର୍ମ ବୋଲେ ଅଜ୍ଞ ମୁହିଁ ମୋର ହିତ ନ ଜାଣଇ
ଆଉ କିଛି ନ ବୋଲିବି ଗମନ କାଳେ ।
ହଂସ ଦୁହେଁ ସେରୂପେ କଲେ ।
ସେରୂପେ କୂର୍ମକୁ ଦେଖି ଜନେ ଧାଇଁଲେ । ୭୦ ।

ସର୍ବେ ଗୋରକ୍ଷକ ବାଳ ଧାଇଁ କଲେ କୋଳାହଳ
କହନ୍ତି ଏ କୂର୍ମ ଯାଉଅଛି ଗଗନେ ।
ଯହିଁ ତହିଁ ଏ ପଡ଼ିଲେ ପଡ଼ିବ ଏହି କୁଡ଼ିଲେ
କେ ବୋଲେ ପୋଡ଼ିବା ତାହା କେହି ନ ମାନେ ।
କେ ବୋଲଇ ରାନ୍ଧି ଖାଇବା ।
କେ ବୋଲଇ ମାରି କରି ଘରକୁ ନେବା । ୭୧ ।

କୂର୍ମ ଶୁଣି କ୍ରୋଧ କଲା ପୂର୍ବ କଥା ପାସୋରିଲା
ବୋଇଲା ଖାଇବ କାହିଁ ତୁମ୍ଭେ ଏଠାରେ ।

ଏମନ୍ତ ବୋଲନ୍ତେ ତଳେ   ପଡନ୍ତି ସେହିକ୍ଷଣରେ
ବାଲକେ ପିଟି ପକାଇ ଘରକୁ ନେଲେ ।
ଏହି ହେତୁ ମିତ୍ର ବଚନ ।
ନ କଲେ ଯେ କୂର୍ମ ପ୍ରାୟେ ଲଭେ ମରଣ । ୩୨ ।
ଏଥୁଅନ୍ତେ ଗୁପ୍ତଚର   ବକ ରାଜା ସମୀପର
ଆସି କହିଲା ହେ ଦେବ ପୂର୍ବରୁ ମୁହିଁ ।
କହିଲି ଦୁର୍ଗ ଶୋଧନ   କରି ତୁମ୍ଭେ ପ୍ରତିକ୍ଷଣ
ତାହା ନ କଲାର ଫଳ ମିଳିଲା ଏହି ।
ମେଘବର୍ଣ୍ଣ ନାମ ବାୟସ ।
ଗୃଧ୍ର ତାକୁ ପେଷିଥିଲା ପୋଡଲା ବାସ । ୩୩ ।
ରାଜା ପକାଇ ନିଃଶ୍ୱାସ   ଦୁଃଖେ କହଇ ନିର୍ଦ୍ଦୋଷ
ନମସ୍କାର ଉପକାର ହେତୁ ବିଶ୍ୱାସ ।
କରଇ ଯେ ଶତ୍ରୁଠାରେ   ସେ ଶୋଇ ବୃକ୍ଷ ଅଗରେ
ଯେଉଁଜନ ତାହା ପ୍ରାୟେ ହୋଇ ବିନାଶ ।
ଗୁପ୍ତଚର କହଇ ପୁଣି ।
ମୋହର ବଚନ ଶୁଣ ହେ ରାଜମଣି । ୩୪ ।
ଯେଉଁ ଦିନ ମେଘବର୍ଣ୍ଣ   ଦୁର୍ଗ ଦହନ କରଣ
ଏଠାରୁ ସେଠାକୁ ଗଲା ରାଜା ଦେଖିଲା ।
ମେଘବର୍ଣ୍ଣ ଶୁଦ୍ଧ ଚିତ୍ତ   ଜାଣି ମୟୂର ଭୂଭୃତ
ପ୍ରସନ୍ନରେ ଗୃଧ୍ର ମନ୍ତ୍ରୀ ଅଗ୍ରେ କହିଲା ।
ଏକା ମୋର ଏ ମେଘବର୍ଣ୍ଣ ।
କର୍ପୂର ଦ୍ୱୀପ ରାଜ୍ୟରେ ହେଉ ରାଜନ । ୩୫ ।
କୃତ କୃତ ଯେଉଁ ଭୃତ୍ୟ   ନାଶ ନ କର ତା କୃତ୍ୟ
ଧନ ଦେଇ ମନ ତୋଷି ନୟନେ ଗୃହିଁ ।

କହ ମଧୁର ବଚନ   କରିବ ତାଙ୍କୁ ପୂଜନ
ଯେରୂପେ ତାର ମନରେ ଆନନ୍ଦ ହୋଇ ।
ଶୁଣି ଚକ୍ରବାକ କହଇ ।
ତଦନ୍ତରେ ସେଠାରେ କି କ ହୁଅଇ । ୩୬ ।
ଗୃଧ୍ରଚର କହେ ପୁଣ   ସେତାର ଚରିତ ଶୁଣ
ତଦନ୍ତରେ ଗୃଧ୍ର ମନ୍ତ୍ରୀ ରାଜାକୁ କହି ।
ଏ ନୋହେ ଉଚିତ ତର   କର ଅନୁଗ୍ରହାନ୍ତର
ନୀଚଠାରେ ଉପକାର କିଛି ନୁହଇ ।
ଅବଶ୍ୟରେ ଯୁକ୍ତି କଥନ ।
ନାଇ ମୁଠେ ତନ୍ତୁ କାଣ୍ଡେଲ ପ୍ରାପ୍ତ କାଣ । ୩୭ ।
କଦାପି ଯେ ବଡ ଲୋକ   ତାହା ସ୍ଥାନେ ନୀଚ ଲୋକ
ସ୍ଥାପିଲେ ନିଜ ସ୍ୱାମୀଙ୍କ ଲୋପ କରଇ ।
ଋଷି ଅନୁଗ୍ରହ କଲେ   ମୂଷିକ ବ୍ୟାଘ୍ର ହୋଇଲା
ସେ ପୁଣି ଋଷିଙ୍କି ମାରିବାକୁ ଇଚ୍ଛଇ ।
ଯେବେ ନୀଚ ବଡ ହୁଅଇ ।
ତେବେ ସେ ସ୍ୱାମୀଙ୍କ ପ୍ରାଣି ବଧ କରଇ । ୩୮ ।
ଚିତ୍ରବର୍ଣ୍ଣ ପଚାରଇ   ଏକଥା କିରୂପେ ହୋଇ
ଶୁଣି ଗୃଧ୍ର କହୁଅଛି ଶୁଣ ସ୍ୱଜନ ।
ଗୌତମାରଣ୍ୟ ଭିତର   ମହାତପା ମୁନିଙ୍କର
ଥିଲା ଏକ ରମଣୀୟ ଆଶ୍ରମ ସ୍ଥାନ ।
ଏକ ଦିନେ ମୂଷିକ ଯୋଗ ।
ଆଶ୍ରମେ କରଇ ମୁଖୁଁ ହୋଇଲା ଗଳିତ । ୩୯ ।
ସେ ମୂଷିକ ଦେଖି ଋଷି   ହୋଇଣ ମହା ସନ୍ତୋଷୀ
ବାଳୁଙ୍ଗା ତଣ୍ଡୁଳ କଣ ଦେଇ ପାଳିଲେ ।

ସେ ମୂଷିକ ଖାଇବାକୁ ଗୋଡାଏ ବଡାଳ ତାକୁ
ଦେଖିଲେ ମୁନି ତାହାକୁ ବଡାଳ କଲେ ।
ବଡାଳକୁ ଗୋଡାଏ ଶ୍ୱାନ ।
ତା ଦେଖି ତାକୁ କୁକ୍କୁର କଲେ ସେ ପୁଣ । ୪୦ ।
ତାହାକୁ ଦେଖିଣ ଅଗେ ବାଘ ଗୋଡାଇଲା ବେଗେ
ତା ଦେଖି ତାହାକୁ ବାଘ ପୁଣି ସେ କଲେ ।
ମୁନି ସେ ବାଘକୁ ପୁଣି ମୂଷିକ ପରାଏ ମଣି
ତାହାଠାରେ ବାଘ ବୋଲି ଭୟ ନ କଲେ ।
ଯେ ମୁନିଙ୍କି ଦେଖି ଆସନ୍ତି ।
ଏହି ସେ ମୂଷିକ ବ୍ୟାଘ୍ର କଲେ କହନ୍ତି । ୪୧ ।
ଏହା ଶୁଣି ସେହି ବ୍ୟାଘ୍ର ମନେ ଚିନ୍ତା କଲା ବ୍ୟଗ୍ର
ଚିନ୍ତା ହୋଇ ବୋଲୁଅଛି ଯାବତ୍‌କାଳ ।
ଏ ମୁନି ଜୀଇଅଛନ୍ତି ତେତେକାଳ ମୋ ଅକୀର୍ତ୍ତି
ନ ଯିବ ମାରିବି ବୋଲି କଲା ବିଚାର ।
ବିଚାରଣ ମୁନି ପାଶକୁ ।
ଜାଣି ଋଷି କହୁଛନ୍ତି ଦେଖ ଏହାକୁ । ୪୨ ।
ଏମନ୍ତ ବୋଲିଣ ନୀର ସିଞ୍ଚିଲେ ତାର ଉପର
ପୁଣି ତପର ପ୍ରଭାବେ ମୂଷିକ କଲେ ।
ଏହି ହେତୁରୁ ନୀଚର ଶ୍ରେଷ୍ଠ ପଦେ ଅଧିକାର
ନ ଦେଇ ଯେବେହେଁ ଦେବ ଆପଣେ ମରେ ।
ଏଣୁ କାର୍ଯ୍ୟ ହେଲେ ସୁକର ।
ଅତ ଲୋଭ ସକାଶରୁ ଏହା ନ କର । ୪୩ ।
ପ୍ରଥମୁ ଉତ୍ତମ ଜିନ ସୁଖରେ କଲା ଭୋଜନ
ମଧ୍ୟେ ମଧ୍ୟମ ମତ୍ସ୍ୟକୁ ପଛେ ଜଘନ୍ୟ ।

କ୍ରମେ ସମସ୍ତଙ୍କୁ ଖାଇ ଅଚଳଶମ୍ଭୁ ଲୋଭ ପାଇ
ସବୁ ପକ୍ଷେ କଦନ୍ତାଙ୍କୁ ଧଇ ବଦନ ।
ବକ ନେଇ ଥୋଇଲା କ୍ଷଣି ।
କର୍କଟ ହସ୍ତରେ ବକ ଚୋଟିକି ହାଣି । ୪୪ ।
ଚିତ୍ରବର୍ଣ୍ଣ କହେ ପୁଣି କହ ହେ ଏକଥା ଶୁଣି
ଗୃଧ୍ର କହେ ମାଳବ ଦେଶେ ସର ଅଛୁ ।
ପଦ୍ମଗର୍ଭ ନାମ ତାର ବହୁତ ମତ୍ସ୍ୟଙ୍କ ଘର
ତହିଁ ଏକ ବୃଦ୍ଧ ବକ ବାସ କରୁଛୁ ।
ସବୁ ଦନେ ସାମର୍ଥ୍ୟ ହୀନ ।
ହୋଇ ଥାଇ ସେହି ବକ ଦୀନ ବଦନ । ୪୫ ।
କେହି କୁଳିର ତା ଦେଖି ପଚାରଇ ଦୂରୁ ଏ ବକ
ତୁମ୍ଭେ କପାଇ ଦୁଃଖିତ ଚିତ୍ତ ହୋଇଛ ।
ବକ କହେ ଏହି ମୀନ ମାନେ ମୋ ଜୀବନ ଧନ
ତାଙ୍କୁ କୈବର୍ତ୍ତ ମାରିବ ବୋ ପଚାରୁଛ ।
ଏମନ୍ତ ଶୁଣିଣ ନଗରେ ।
ଜାଣିଲି ମରିବ କଷ୍ଟ କବା ଅହାରେ । ୪୬ ।
ଏହା ଶୁଣି ସବୁ ମୀନ ବଚ୍ଚରଲେ ଏକ ମନ
ବର୍ତ୍ତମାନ ଉପକାରୀ ବକ ଅମ୍ଭର ।
ଏହି ହେତୁ ବଚ୍ଚର ଯେ ସୁମ୍ଭେ ଉପକାରୀ
ଅପକାରୀ ଯେ ସେ ଶତ୍ରୁ କର ବଚ୍ଚର ।
ଏହା ସଙ୍ଗେ ସନ୍ଧି କରିବା ।
ମିତ୍ର ଅପକାରୀ ହେଲେ ତାଙ୍କୁ ଛାଡ଼ିବା । ୪୭ ।
ମତ୍ସ୍ୟମାନେ ବକ ଆଗ କହନ୍ତି ହୋଇ ସରାଗ
କରୁପେ ଅମ୍ଭମାନଙ୍କ ରକ୍ଷା ହୋଇବ ।
୦

ବକ ବୋଲେ କି ବଣ୍ଟିର  ଅଛି ବହୁ ଜଳାଧାର
ତହିଁକି ତୁମ୍ଭର ମନ ଯିବାକୁ ଥିବ ।
ମୁହିଁ ଏକା ନେବ ତୁମ୍ଭଙ୍କୁ ।
ତୁମ୍ଭେ କିଛି ଶଙ୍କା ନ କରବ ଥମ୍ଭଙ୍କୁ । ୪୮ ।
ମତ୍ସ୍ୟମାନେ ମରଣରେ  ଭୟ କରଣ ସହିରେ
ହେଉ ଏହିରୂପ ବୋଲି ସ୍ୱୀକାର କଲେ ।
ଏଥୁଅନ୍ତେ ଦୁଷ୍ଟ ବକ  ନେଇ ମତ୍ସ୍ୟ ଏକ ଏକ
ଉଢଲେ ବସି ମାରନ୍ତେ ସମସ୍ତେ ମଲେ ।
ଏଥୁଅନ୍ତେ ସେ କର୍କଟକ ।
ମତେ ସେଠାକୁ ଘେନ ଯାଅ ହେ ବକ । ୪୯ ।
ଏହା ଶୁଣି ଦୁଷ୍ଟ ବକ  କୁଲୀର ମାଂସେ ଉତ୍ସୁକ
ବହୁତ ଦୂର ତାହାକୁ ଘେନଣ ଗଲା ।
ମାରିବା ନିମିତ୍ତେ ତଳେ  ଧରଲେ ସେ ଯେତେବେଳେ
କର୍କଟ ଉଢଲେ ଅସ୍ଥିଖଣ୍ଡ ଦେଖିଲା ।
ଦେଖି ତାହା ମନେ ବଣ୍ଟିଇ ।
ହା ମୋର ଅଭାଗ୍ୟ ନିଷ୍କାରଣେ ମୁଁ ମଲି । ୫୦ ।
ହଉ ଭଲ ବର୍ତ୍ତମାନ  କାଳରେ ଉଚିତ ଜ୍ଞାଣ
ଭୟ ନ ଅସିଲାବେଳେ ଭୟ କରବ ।
ଯେତେବେଳେ ହେଲା ଭୟ  ତେତେବେଳରେ ନିର୍ଭୟ
ହୋଇ ପ୍ରହାର କରବ ମଲେ ମରବ ।
ଏହିହେତୁ ନିର୍ଭୟ ହୋଇ ।
ବେକ କାଟି ଦେଲେ କିଣ୍ଟା ମରବ ଏହି । ୫୧ ।
ଯେତେବେଳେ ଶତ୍ରୁ ଅସି  ଶସ୍ତ୍ର ଧର ଅଗେ ମିଶି
ନିର୍ଭୟ ହୋଇ ତା ସଙ୍ଗେ ଯୁଦ୍ଧ କରବ ।

ମୁଦ୍ଧ କର ତାକୁ ମାର   ସେ ଅବା ଏହାକୁ ମାର
ଉଭୟ ଥା ରଥ ସଙ୍ଗେ ମର ଶୋଇବ ।
ଏ ବସ୍ତରେ ସେ କର୍କଟକ ।
ଆପଣା ହସ୍ତରେ ଛିଣ୍ଡାଇଲା ତା ବେକ । ୫୨ ।
ଅଢ ଲୋଭକୁ ନ କର   କଲେ ବକ ପ୍ରାପ୍ତ ମର
ଏଥୁଅନ୍ତେ ଚିତ୍ରବର୍ଣ୍ଣ ରାଜା କହଇ ।
ମେଘବର୍ଣ୍ଣ ରାଜା ହୋଇ   କର୍ପୂର ଦ୍ୱୀପରେ ଥାଇ
ଯେତେ ଭଲ ଦ୍ରବ୍ୟ ଦେବ ଆମ୍ଭଙ୍କୁ ନେଇ ।
ତେଣୁ ଆମ୍ଭେ ବନ୍ଧ୍ୟାଚଳରେ ।
ମହା ସୁଖରେ ରହିବା ଆମ୍ଭ ନଗରରେ । ୫୩ ।
ଗୃଧ୍ର ଶୁଣି ହସି କହେ   ଦେବ ଏ ଉଚିତ ନୋହେ
ଅନାଗତ କାର୍ଯ୍ୟ ଶୁଣି ଯେ ତୁଷ୍ଟ ହୋଇ ।
ହାଣ୍ଡି ଭାଙ୍ଗିଲା ବ୍ରାହ୍ମଣ   ପରାଏ ସେ ଜନ ଜାଣ
ବହୁ ପରାଭବ ପାଇ ପଳାଇ ଯାଇ ।
ରାଜା ପଚାରନ୍ତି ଗୃଧ୍ରକୁ ।
ଗୃଧ୍ର କହୁଅଛି ପୁଣି ମହାରାଜଙ୍କୁ । ୫୪ ।
ଦେବୀକୋଟ ନଗରରେ   ଦେବଶର୍ମା ସେ ନାମରେ
ବ୍ରାହ୍ମଣ ସଂକ୍ରାନ୍ତିକାଳେ ଛତୁଆ ସରା ।
ଦାନ ଘେନି ଯାଉଥିଲା   ସନ୍ଧ୍ୟାକାଳ ଯହୁଁ ହେଲା
କୁମ୍ଭକାର ଭାଣ୍ଡ ଘରେ ଯାଇଁ ଶୋଇଲା ।
କଲ୍ପ ସେ ବହୁତ ବସ୍ତୁର ।
ଶୁଣ ତୁମ୍ଭେ କହିବା ବସ୍ତୁର ପ୍ରକାର । ୫୫ ।
ଏ ଯେ ଛତୁଆ ସରାକୁ   ବିକିବ ଯାହା ତାହାକୁ
ଯେବେ ଦଶ କଉଡ଼ା କୌଡ଼ୀ ପାଇବ ମୁହିଁ ।

ତେବେ ସେ କୌତୀକ ଅଣି ପଟ ଶରୀରକୁ ହଣି
ପୁଣି ତାକୁ ବଳ ଲଭ୍ୟ ଧନ ବୃଦ୍ଧାଇ ।
ପୁଣି ହଣି ପୁଣ ବସ୍ତକୁ ।
ତାକୁ ବଳ ପାଇବ ମୁଁ ବହୁ ଧନକୁ । ୫୬ ॥
ଲକ୍ଷ ସଂଖ୍ୟା ପାଇ ଧନ ଚତୁର୍ଥୀ କନ୍ୟା ପୁଣ
ବିବାହ ହୋଇବ ମୁହିଁ ଧନକୁ ଦେବ ।
ସେ କନ୍ୟା ଉଦରେ ପୁଣ ଯେହରୂପ ଯଉବନ
ଯୁକ୍ତ ହୋଇଥିବ ତାରେ ସ୍ନେହ କରିବ ।
ଏଥୁଅନ୍ତେ ସପୂତ୍ର ଜନେ ।
ଯେବେ ପରସ୍ପରେ କଳି କରିବେ ମାନେ । ୫୭ ॥
ଏଥୁଅନ୍ତେ କ୍ରୋଧ ହୋଇ ଦଣ୍ଡେ ତାଙ୍କୁ ପିଟିବଇଁ
ଏହରୂପେ ବୋଲି ଦଣ୍ଡ ଫୋପଡ଼ାଇଲା ।
କାଜଳ ଭାଣ୍ଡରେ ଦଣ୍ଡ ହୋଇଗଲା ଖଣ୍ଡ ଖଣ୍ଡ
ଛତୁଅ ଶରୀର ମଧ୍ୟେ ଚୂର୍ଣ୍ଣ ହୋଇଲା ।
ଭଣ୍ଡ ଧ୍ୱନ ଶୁଣି କୁମ୍ଭାର ।
ବ୍ରାହ୍ମଣକୁ ମଣ୍ଡପରୁ କଲା ବାହାର । ୫୮ ॥
ଏହ ହେତୁରୁ କହଇ ଅନାଗତ ଚିନ୍ତା କର
ବ୍ରାହ୍ମଣ ପରିଏ ପରିଭବ ନ ପାଅ ।
ଏଥୁଅନ୍ତେ ଏକାନ୍ତରେ ରଜା ପଚାରେ ସହରେ
ହେ ତାତ ଯାହା କରିବା ତା ଶିକ୍ଷା ଦଅ ।
ଶୁଣି ଗୃଧ୍ର କହେ ବଚନ ।
ତାହା କହୁଅଛି ମୁହିଁ ଶୁଣ ରାଜନ । ୫୯ ॥
ମଦୋଦ୍ଧତ ଯେ ନୃପତ ଅତ ମତ୍ତ ଯେଉଁ ଦନ୍ତ
ଅମାର୍ଗ ପ୍ରବୃତ୍ତ ଯେହ୍ନେ ଜଳ ହୁଅଇ ।

ଏମାନଙ୍କୁ ଉପଦେଶ   ଦେଖାଇ କାର୍ଯ୍ୟ ଅଶେଷ
କରନ୍ତି ଯେ ତାହାଙ୍କର ନନ୍ଦା ହୁଅଇ ।
ଅହେ ଦେବ କହୁଛୁ ଶୁଣ ।
ଅମ୍ଭେ ଯାହା କଲେଇଁ ଏ ଦୁର୍ଗ ଭଞ୍ଜନ । ୬୦ ।
ବଳ ଦର୍ପରୁ ଏ ହେଲା   କେ ବା ଉପାୟରେ କଲା
ରଜା ବୋଲେ ତୁମ୍ଭ ଉପାୟରେ ହୋଇଲା ।
ଗୃଧ୍ର ବୋଲେ ମୋ ବଚନ   ଯେବେ ହୋଇଲା ପ୍ରମାଣ
ବର୍ତ୍ତମାନ ସ୍ୱଦେଶକୁ ଚଳତ ଭଲା ।
ନକଟରେ ବରଷା କାଳ ।
ହେବ ଏହି କାରଣରୁ ସତ୍ୱରେ ଚଳ । ୬୧ ।
ଯେବେ ଏ କଥା ନ କର   ତେବେ ଅପି ବର୍ଷାକାଳ
ପ୍ରବେଶ ହୋଇଲେ ତୁଲ୍ୟ ବଳେ ବଇର ।
ଯେତେବେ ହେବ ପରବେଶ   ଅମ୍ଭର ନର୍ଦ୍ଦେ ସ୍ୱଦେଶ
ଗମନ ଦୁର୍ଲ୍ଲଭ ହେବ ଜାଣ ହେ ବୀର ।
ଏହେତୁରୁ ଯେ ବର୍ତ୍ତମାନ ।
ସୁଖ ଭୋଗ ନମିତ୍ତରେ କର ସନ୍ଧାନ । ୬୨ ।
ଦୁର୍ଗ ଭଙ୍ଗର ଯେ ଯଶ   ପାଇଲ ତୁମ୍ଭେ ଅବଶ୍ୟ
ମୋହର ସମ୍ମତ ଏହି ଜାଣ ରାଜନ ।
ଯେ ଧର୍ମ ଆଶ୍ରୟ କରି   ସ୍ୱାମୀ ପ୍ରିୟା ପ୍ରିୟ ଛାଡ
ହିତ ଅପ୍ରିୟ କହଇ ସେ ମନ୍ତ୍ରୀ ଜାଣ ।
ସେ ମନ୍ତ୍ରୀରେ ସହାୟବନ୍ତ ।
ରାଜା ହୋଇଣ ସାଧଇ କାର୍ଯ୍ୟ ବହୁତ । ୬୩ ।
ସମଲୋକ ସଙ୍ଗେ ଯୁଦ୍ଧି   କରଇବ ବଶ୍ୱର ବାନ୍ଧି
ଯେଉଁ ହେତୁ ଯୁଦ୍ଧ କଲେ ଜୟ ସନ୍ଦେହ ।

ଯେଣୁ ସୁନ୍ଦ ଉପସୁନ୍ଦ   ତୁଲ୍ୟବଳ କରି ଦ୍ୱନ୍ଦ୍ୱ
ଦୁହେଁ ଏକାବେଳେ ଯୁଦ୍ଧେ ଛାଡ଼ିଲେ ଦେହ ।
ଏଣୁ ତୁଲ୍ୟ ବଳରେ ଯୁଦ୍ଧ ।
କଲେ ବିଜୟ ସନ୍ଦେହ ଶାସ୍ତ୍ର ନିଷେଧ । ୬୪ ।

ଯେବେ ରାଜା ଯୁଦ୍ଧ କରେ   ତୁଲ୍ୟ ବଳର ସଙ୍ଗରେ
ତେବେ ମିଏ ବଳ ରାଜା କାହିଁ ସନ୍ଦେହ ।
ହୁଅଇ ନୁହଇ ଅବା   ଏହି ହେତୁରୁ କେ ଅବା
ପଣ୍ଡିତ କରିବ ଯୁଦ୍ଧ କରି ସନ୍ଦେହ ।
ସେହିଠାରେ ସନ୍ଧି କି ନଇ ।
ଯେବେ ନ କରିବ ତେବେ ଅପଣେ ମରି । ୬୫ ।

ରାଜା କହଇ ଗୃଧ୍ରକୁ   ତୁମ୍ଭେ ପୂର୍ବରୁ ଆମ୍ଭଙ୍କୁ
ଏହି କଥା ଉପଦେଶ କପାଁ ନ କଲ ।
ମନ୍ତ୍ରୀ କହେ ମୋ ବଚନ   ତୁମ୍ଭେ ନ କଲ ରାଜନ
ଆଦ୍ୟ ପ୍ରାନ୍ତ ନ ରହିଲା ମନେ ତୁମ୍ଭର ।
ଏବେ ରଖ ଆମ୍ଭ ସମ୍ମତି ।
ବିଗ୍ରହାରମ୍ଭ ନ କର ରଖିଥ କାହିଁ । ୬୬ ।

ହିରଣ୍ୟଗର୍ଭ ରାଜନ   ସନ୍ଧିଙ୍କ ଯୋଗ୍ୟ ଏ ଜାଣ
କଦାଚିତ ବିଗ୍ରହକୁ ଯୋଗ୍ୟ ନୁହଇ ।
ସତ୍ୟବନ୍ତ ଆର୍ଯ୍ୟ ଧର୍ମ   ବନ୍ତ୍ୟ ସେ ଅନାର୍ଯ୍ୟ କର୍ମ
ଭ୍ରାତୃ ସଂଘାତୀ ଯେ ବଳୀ ଯୁଦ୍ଧ ବିଜୟୀ ।
ଏ ଯେ ସାତ ରାଜନ୍ୟଗଣ ।
ଏହାଙ୍କ ସଙ୍ଗରେ ପ୍ରୀତ କରିବ ଜାଣ । ୬୭ ।

ଯେ ସତ୍ୟବନ୍ତ ରାଜନ   ସେ ସତ୍ୟକୁ ରଖେ ଜାଣ
ତା ସଙ୍ଗେ ସନ୍ଧି କଲେ ନିବୃତ ନୋହି ।

ପ୍ରାଣ ବାଧା ହେଲେ ଅର୍ଥ୍ୟ   କେବେହେଁ ନୋହେ ଅନାର୍ଯ୍ୟ
ଧାର୍ମିକ ସଙ୍ଗରେ କଳି ନ କରେ କେହି ।
ଧର୍ମୀ ପ୍ରଜାନୁରାଗବନ୍ତ ।
ଏହିହେତୁ ଧର୍ମବନ୍ତ ନୋହେ ବହିତ । ୬୮ ।
ବନାଶ ଯେଉଁ କାଳରେ   ଉପସ୍ଥିତ ହୋଏ ତାଳେ
ଦୁଷ୍ଟ ସଙ୍ଗତରେ ପ୍ରୀତ ସେକାଳେ କର ।
ତାକୁ ନ କର ଆଶ୍ରୟ   ନାହିଁ ଯେ ଅନ୍ୟ ଉପାୟ
ଅସମସ୍ତ ଦନ ନେଇ ତାକୁ ଅଦର ।
ତାର ସଙ୍ଗେ ସନ୍ଧି ନ କଲେ ।
ମାରେ ସେ ବପତ୍ତ ଦେଖି ଅସମସ୍ତରେ । ୬୯ ।
ଯେଉଁ ରାଜା ବନ୍ଧୁ ଭ୍ରାତ   ବଳରେ ହୋଏ ସଙ୍ଗତ
ତାହାଙ୍କୁ କେ ନ ପାରଇ ଶୁଣ ରାଜନ ।
ଯେରୂପରେ ବେଣୁସଂଘ   ସେ ଯେବେ କଣ୍ଟକ ସଙ୍ଗ
ଥାଇ ତେବେ ତାହାଙ୍କୁ କାଟିବ କେ ଜନ ।
ବଳୀ ସଙ୍ଗେ ନ ଯୁଝେ କେହି ।
ପବନକୁ ପେଲି କ ସେ ଜୀମୂତ ଯାଇ । ୭୦ ।
ସବୁକାଳେ ସବୁଠାରେ   ଜନ ଅନେକ ଯୁଦ୍ଧରେ
ବଳଶ୍ରୀ ଯେ ଜନ ତାରେ ଯୁଦ୍ଧ ନ କରେ ।
ଦେଖ ଭୃ ପରଶୁରାମ   ସଙ୍ଗେ ଯେ କରେ ସଂଗ୍ରାମ
ସେ ହାର ପଳାଇ ଯାଇ ବଳ ସଙ୍ଗରେ ।
ଏଣୁ ବହୁ ଯୁଦ୍ଧ ବଳଶ୍ରୀ ।
ସଙ୍ଗତରେ ପ୍ରୀତ କଲେ ଶତ୍ରୁ ଜଣଇ । ୭୧ ।
ତହିଁର ବହୁତ ଗୁଣ   ଯୁଦ୍ଧ ଏ ହଂସ ରାଜନ
ଶୁଣି ଚକ୍ରବାକ କହେ ସବୁ ଜାଣିଲି ।

ବର୍ଦ୍ଧ କହୁଅଛୁ ଦେବ   ଯାଉଛୁ ଅଞ୍ଜ ହୋଇବ
ସେଠାର ବୃତ୍ତାନ୍ତ ଜାଣି ଅପିବ୍ର.ଗ୍ଭଲ ।
ଏଥୁଅନ୍ତେ ହିରଣ୍ୟଗର୍ଭ ।
ଚକ୍ରବାକକୁ ପଚ୍ଚରେ କହ ଭୁ ସର୍ବ । ୭୨ ।
ପ୍ରୀତକ ଅଯୋଗ୍ୟ କେତେ   ସ୍ୱଚ୍ଛା କହ ମନ୍ତ୍ରି ମୋତେ
ଜାଣିବାକୁ ମୋର ଇଚ୍ଛା ମନ୍ତ୍ରୀ କହଇ ।
ଦେବ ଶୁଣ ବାଲ ବୃଦ୍ଧ   ଦୀର୍ଘ ରୋଗରେ ଯେ ବଦ୍ଧ
ଯେହୁ ଜ୍ଞାତ ବହିଷ୍କୃତ ଭୀରୁ ନ ହୋଇ ।
ଯେ ଭୃତ୍ୟାଳୁ ସଙ୍ଗତ ହୋଇ ।
ଯେ ଲୋଭୀ ଯାହାର ଭୃତ୍ୟ ଲୁବ୍ଧ ହୁଅଇ । ୭୩ ।
ବିରକ୍ତ ଯାର ପ୍ରକୃତ   ବିଷୟରେ ଅତ୍ୟାସକ୍ତ
ଯେ ଅନବସ୍ଥିତ ଚିତ୍ତ ଦେବ ବ୍ରାହ୍ମଣ ।
ଯେ ନିନ୍ଦା କରଇ ଦୈବ   ଯାହା ସେ କରନ୍ତ ହେବ.
ଏମନ୍ତ ବୋଲଇ ଯେହୁ ଦୈବ ଚିନ୍ତନ ।
ଦୁର୍ଭିକ୍ଷ ବ୍ୟସନରେ ଯୁକ୍ତ ।
ବଳବ୍ୟସନ ସଂଯୁତ ଯେ ଅଦେଶସ୍ଥ । ୭୪ ।
ବହୁତ ରିପୁ ଯାହାର   ଅକାଳେ ସୈନ୍ୟ ତାହାର
ଯେ ସତ୍ୟ ଧର୍ମର ହତ ଏତେ ମନୁଜ ।
ଭଂଶତ ପ୍ରମାଣ ଏହ   ଏତେଠାରେ ସନ୍ଧି ନୋହ
କେବଳ ବିଗ୍ରହ ଯୋଗ୍ୟ ସନ୍ଧିରେ ତ୍ୟାଜ୍ୟ ।
ଏତେଠାରେ ବିଗ୍ରହ କଲେ ।
ଶତ୍ରୁର ବଶକୁ ଯାନ୍ତି ଅତ ବେଗରେ । ୭୫ ।
ବାଲକ ଅଳ୍ପ ପ୍ରଭବ   ତେଣୁ ତା ପାଇଁ ଆହବ
କେହ ନ କରଇ ଯୁଦ୍ଧ ଅଯୁଦ୍ଧ ଫଳ ।

ଜାଣି ନ ପାରେ   ବାଳକ   ତେଣୁ ତାର କେହି ଲୋକ
କୁହନ୍ତି ବୃଦ୍ଧ ସେ ରୋଗୀ ଅତି ଦୁର୍ବଳ ।
ଉତ୍ସାହ ଶକ୍ତିରେ ସେ ହୀନ ।
ହେଲାରୁ ପ୍ରାଭବ କରେ ସମସ୍ତ ଜନ । ୭୬ ।

ଜ୍ଞାତ ଯାକୁ ନ ଯୋଜନ୍ତି   ସମସ୍ତେ ତାକୁ ମାରନ୍ତି
ଜ୍ଞାତମାନଙ୍କୁ ଯୋଜଣ   ଭୀରୁ ଯୁଦ୍ଧରେ ।
କାଣ୍ଡ ଖଣ୍ଡା ଶୂଳି ଦେଖି   ପଳାଇ ଯୁଦ୍ଧ ଉପେକ୍ଷି
ବୀର ହେଲେ ଅବୀରଙ୍କ ଯେନ ସଙ୍ଗରେ ।
ଯେବେ ଯୁଦ୍ଧ କରଇ ସେହି ।
ଅବୀର ପୁରୁଷ ଯେନି ମଗ୍ନ ପଡଇ । ୭୭ ।

ଲୋଭିଜନ ନ ଦିଅଇ   ନ ଦେଲା ହେତୁରୁ କେହି
ତା ପାଇଁ ମନ ନ ଦେଇ ପଳାଇ ଯାଇ ।
କପକ୍ଷ ଜମ୍ମ କରଇ   ସବୁ ଧନ ତାର ନେଇ
ଆପଣା ଭଣ୍ଡାରେ ପୁଣି ନେଇ ରଖଇ ।
ସେହି ଲୋକ ପୁଣି ଏହାକୁ ।
ମାରଇ ସେ ଧନ କି ନ କରେ କାହାକୁ । ୭୮ ।

ଯେ ବିରକ୍ତ ମଣ୍ଡଳ   ଛାଡନ୍ତି ତାକୁ ମଣ୍ଡଳ
ବିଷୟେ ଯେ ଅଭ୍ୟାସକ୍ତ ସେ ସୁଖ ସାଧ୍ୟ ।
ଯେ ଅନବସ୍ଥିତ ଚିତ୍ତ   ମନ୍ତ୍ରିମାନେ ତାକୁ ବ୍ୟସ୍ତ
କରନ୍ତି ସର୍ବ ଲୋକର ହୋଏ ବିରୋଧ ।
ଯେ ଦେବ ବ୍ରାହ୍ମଣ ନିନ୍ଦଇ ।
ସବୁକାଳେ ଅଧର୍ମରୁ ସେ ନାଶ ଯାଇ । ୭୯ ।

ଯେଉଁ ନର ଅଦେଶସ୍ଥ   ତାକୁ କ୍ଷୁଦ୍ର ରିପୁ ହତ
କରେ ଦେଖ କ୍ଷୁଦ୍ର ନକ୍ର ହାତୀକି ଜଳେ ।

ହୁଅଇ ଯେ ବହୁ ବ୍ରିଷ ଯାଇ ସେ ବହୁ ସଂଶାସ
ଶ୍ୟେନ ମଧ୍ୟେ କପୋତ ପଶୁବ୍ ଯେ ଚଳେ ।
ଯେଉଁ ମାର୍ଗେ ସେ ମାର୍ଗେ ଯାଇ ।
ମାରଇ ତାକୁ ସେ ଏଥି ସନ୍ଦେହ ନାହିଁ । ୮୦ ।
ଅକାଳେ ଯେନ ସୈନ୍ୟଙ୍କୁ କରଇ ଯେ ଯୁଦ୍ଧ ତାକୁ
କାଲ ଯୋଧୀ ଦାଲ ହେଲେ କରଇ ହତ ।
ଯେହ୍ନେ ରାତ୍ରରେ କୌଶିକ ସେ ମାରଇ ବହୁ କାକ
ଦିବସରେ କାକ କରେ ଉଲୂକ ଅସ୍ତ ।
ଯାର ସତ୍ୟ ଧର୍ମ ନ ଥାଇ ।
ତା ସଙ୍ଗେ ସନ୍ଧିକ କଲେ ଭଲ ନୁହଇ । ୮୧ ।
ଅଉ କହୁଅଛ ଶୁଣ ସନ୍ଧି ବିଗ୍ରହ ଆସନ
ଯାନ ସଂଶ୍ରୟ ଯେ ଦ୍ୱୈଧୀଭାବ ଷଡ୍ଗୁଣ ।
କର୍ମ ଆରମ୍ଭ ଉପାୟ ପୁରୁଷ ଦ୍ରବ୍ୟ ସହାୟ
ଦେଶ କାଲ ବିଭାଗ ଏ ତିନେଙ୍କି ଜାଣ ।
ବିପତ୍ତିର ଯେ ପ୍ରତିକାର ।
କାର୍ଯ୍ୟ ସିଦ୍ଧି ମେଶି ଏ ପଞ୍ଚାଙ୍ଗ ବିଚାର । ୮୨ ।
ସାମ ଭେଦ ଦଣ୍ଡ ଦାନ ଚାରି ଉପାୟ ଏ ଜାଣ
ଉତ୍ସାହ ଶକତି ମନ୍ତ୍ର ଶକତି ଦୁଇ ।
ପ୍ରଭୁ ଶକତିକ ଯେନା ତିନ ଶକତି ଏ ଜାଣି
ଏହା ବିଚାରି ଜିଗୀଷୁ ବଡ ହୁଅଇ ।
ଯେଣୁ ନୀତି ବେତ୍ତା ଯେ ଜନ ।
ଚଞ୍ଚଳା ଲକ୍ଷ୍ମୀ ନ ଛାଡେ ତାର ସଦନ । ୮୩ ।
ଯାହାର ହୁଅଇ ଚିତ୍ତ ସର୍ବଦା ସମ ବଭକ୍ତ
ଚାରି ଗୁପ୍ତ ମନ୍ତ୍ର ଗୁପ୍ତ ପ୍ରିୟ ବଚନ ।

ଯେ ପ୍ରାଣିମାନଙ୍କଠାରେ   ନ କହେ ଅପ୍ରିୟ ବାରେ
ସେ ସିନ୍ଧୁ ପର୍ଯ୍ୟନ୍ତ ପୃଥ୍ୱୀ ପାଳେ ରାଜନ ।
ଯେବେ ଗୃଧ୍ର ମହା ଶଠାବ ।
ସନ୍ଧି ଶିକ୍ଷା ଦେଲେ କ ସେ ତା ନ କରବ । ୮୪ ।
ବର୍ତ୍ତମାନ ହେଲା ଜୟ   ହେବାରୁ ଦର୍ପ ଉଦୟ
ହୋଇଛ ତାଙ୍କର ତେଣୁ ଏହା ନ ମାନ ।
ଏରୂପେ କହୁଛ କର   ସିଂହଳଦ୍ୱୀପକୁ ଚର
ପେଶି ସେ ସିଂହଳଦ୍ୱୀପ ରାଜାଙ୍କୁ ଅଣ ।
ସେ ସାରସ ଜମ୍ବୁଦ୍ୱୀପକୁ ।
ଯାଇ ଜାତ କରୁ ତାଙ୍କ ପଶ୍ଚାତାପକୁ । ୮୫ ।
ଦେବ ସୁଗୁପ୍ତ ବର୍ତ୍ତର   ସୁସଂହତ ବଳ କର
ଶତ୍ରୁ ପୁରକୁ ପେଶିବ ଯେରୂପେ ସେହି ।
ହୋଇବ ତଉ ସଂତପ୍ତ   ତପ୍ତରେ ସଂହିତ ତପ୍ତ
ଯେଣୁ ହୁଏ ଏହା କର କହୁଛ ମୁହିଁ ।
ରାଜା ହେଉ ଏରୂପେ କହି ।
ବଚିଏ ବକକୁ ଲେଖ ଦେଇ ଭେଜଇ । ୮୬ ।
ସିଂହଳଦ୍ୱୀପରେ ଯାଇ   ବକ ପ୍ରବେଶ ହୁଅଇ
ମହାବଳ ନାମ ସାରସକୁ କହିଲା ।
ଶୁଣି ସେ ସବ ବୃତ୍ତାନ୍ତ   ସୈନ୍ୟ ସେନଣ ତୁରିତ
ଯାଇ ମୟୂର ନଗରେ ପ୍ରବେଶ ହେଲା ।
ପ୍ରବେଶ ହୋଇଣ ସେଠାରେ ।
ବଳ ସେନଣ ରହିଲା ବେଢି ନଗରେ । ୮୭ ।
ଏଥୁଅନ୍ତେ ଗୂଢଚର   କହିଲା ରାଜା ଅଗର
ଶୁଣିମା ହେଉ ସେଠାରେ ଯେତେ ବୃତ୍ତାନ୍ତ ।

ସେଠାରେ ଗୃଧ୍ର କହିଲା ଚିରକାଳ କାକ ଥିଲା
ହଂସ ନଗରେ ଏ ଜାଣେ ଯେତେ ଚରିତ ।
କହ କାକ ନିର୍ଭୟ ହୋଇ ।
ରାଜହଂସ ସନ୍ଧିକ ଯୋଗ୍ୟ କ ନୁହଇ । ୮୮ ।
ସେ ସମୟେ ଚିତ୍ରବର୍ଣ୍ଣ ପଗ୍ଃରଇ ମେଘବର୍ଣ୍ଣ
କରୂପେ ହିରଣ୍ୟଗର୍ଭ ରାଜା ତା ମନ୍ତ୍ରୀ ।
ମେଘବର୍ଣ୍ଣ କହେ ଶୁଣ ହିରଣ୍ୟଗର୍ଭ ରାଜନ
ଯୁଧିଷ୍ଠିର ସମବାକ୍ୟ ସତ୍ୟ ସୁମତି ।
ଚକ୍ରବାକ ସଦୃଶ ମନ୍ତ୍ରୀ ।
ବଗ୍ଃରରେ କେଉଁଠାରେ ଅନ୍ୟ ନାହାନ୍ତି । ୮୯ ।
ଶୁଣି ରାଜା ପୁଣି କହି ଯେବେ ଏରୂପରେ ସେହି
କରୂପରେ ତୁ ତାହାକୁ ବଞ୍ଚିଲୁ କହ ।
ମେଘବର୍ଣ୍ଣ କହେ ଶୁଣ ବିଶ୍ୱାସ ଯେ କରେ ଜନ ।
ତାକୁ ବଞ୍ଚିଲେ କ ସେହୁ ଆଶ୍ଚର୍ଯ୍ୟ ବହି ।
ଶୋଇଲା ଲୋକକୁ କୋଡ଼ରେ ।
ବସି ମାରଇ ଯେ ଲୋକ କ ଯଶ ତାରେ । ୯୦ ।
ଶୁଣ ଦେବ ସେହି ଚକ୍ର—ବାକ ମତେ ଦେଖି ବକ୍ର—
ଚରିତ ଏ ଜାଣି ନୃପ ଅଗେ କହିଲା ।
ଏହାକୁ ଯେବେ ରଖିବ ଅବଶ୍ୟ ଏ ଦଗା ଦେବ
ଶୁଣି ଦଳ୍ଅର ରାଜା ନାହିଁ ତା କଲା ।
ତେଣୁ ମୁହିଁ ତାକୁ ବଞ୍ଚିଲି ।
ଘର ପୋଡ଼ି ଦେଇ ତାର ବେଗେ ଅଇଲି । ୯୧।
ମୋର ଯାଏ୍ ଏହି ଜନ କହଇ ସତ୍ୟ ବଚନ
ଏହା ମଣି ଯେ ଜନ ଦୁର୍ଜନ ବଚନ ।

ଶୁଣି ବିଶ୍ୱାସ କରଇ   ସେହି ତାଙ୍କୁ ଯେ ବଞ୍ଚଇ
ଦେଖ ନେଉଥିଲା ଛାଗ ଏକ ବ୍ରାହ୍ମଣ ।
ବାଟେ ତାକୁ ଧୂର୍ତ୍ତ ଦେଖିଲା ।
ଛାଗ ନୋହେ କୁକ୍କୁର ଏ ବୋଲି ବଞ୍ଚିଲା । ୧୨ ।
ରାଜା କହି ବୋଲେ ଶୁଣି   କହଇ କାକ ତା ପୁଣି
ଗୌତମ ଅରଣ୍ୟେ ଏକ ବ୍ରାହ୍ମଣ ଥିଲା ।
ସେ ଯାଗ କରିବା ପାଇଁ   ଅପର ଗ୍ରାମକୁ ଯାଇ
ଛାଗ କିଣି କାନ୍ଧେ ଧରି ମାର୍ଗେ ଆଇଲା ।
ତିନ ଧୂର୍ତ୍ତ ତାକୁ ଦେଖିଲେ ।
ଗୋଟିଏ ଗୋଟିଏ ହୋଇ ମାର୍ଗେ ବସିଲେ । ୧୩ ।
ଏକ ଧୂର୍ତ୍ତ ବ୍ରାହ୍ମଣକୁ   ବୋଲେ ଏହି ବଚନକୁ
କାହିଁ ବ୍ରାହ୍ମଣ କାନ୍ଧେ କୁକ୍କୁର ନେଉଛ ।
ବିପ୍ର କହେ ନୋହେ ଶ୍ୱାନ   ଯଜ୍ଞ ଛାଗ ଏହି ଜାଣ
ତୁମ୍ଭେ ଯାହା କହୁଅଛ ସେ କଥା ମିଛ ।
ଏଥୁଅନ୍ତେ କୋଣକେ ଧୂର୍ତ୍ତ ।
କହେ କୁକ୍କୁର ନେଉଛ ଏ କି ଉଚିତ । ୧୪ ।
ଏହା ଶୁଣିଣ ବ୍ରାହ୍ମଣ   ଛାଗକୁ ଥୋଇଣ ପୁଣ
ଚାହିଁ ତାକୁ ପୁଣ ପୁଣ କାନ୍ଧେ ଧଇଲା ।
ଦୋଳାୟିତ ମତି ପୁଣ   ହୋଇ ଚଳିଲା ବ୍ରାହ୍ମଣ
ଯେଣୁ ଖଳ ବଚନରେ ଭୁଲଇ ମନ ।
ତିନି ଜଣେ କଲେ ବିଶ୍ୱାସ ।
ଯେହେ ଚିତ୍ରବର୍ଣ୍ଣ ଓଟ ଗଲା ସେ ନାଶ । ୧୫ ।
ରାଜା ଶୁଣି ପଚାରଇ   ପୁଣି ମେଘବର୍ଣ୍ଣ କହି
କଉଣସି ବନେ ମଦୋତ୍କଟ ନାମରେ ।

ସିଂହ ତାର ପରବୃର   କାକ ବ୍ୟାଘ୍ର ଯେ ଶୃଗାଳ
ଏ ତିନ ବନେ ବୁଲନ୍ତେ ଓଟଂଦେଖିଲେ ।
କେ ତୁ କେଉଁଠାରୁ ଅଇଲୁ ।
ଓଟ କହେ ସ୍ୱଚରିତ ଜାଣ କହନ୍ତି । ୧୬ ।
ତାହାଙ୍କୁ ସମସ୍ତେ ନେଇ   ସମର୍ପିଲେ ସିଂହଠାଇଁ
ସେ ସିଂହ ଅଭୟ ଦେଇ କହେ ବଚନ ।
ଥନ୍ତୁ ହେଲା ତୋର ପୁଣ   ଚିତ୍ରବର୍ଣ୍ଣ ନାମ ଜାଣ
ଏତେ ବୋଲି ତାଙ୍କ ସଙ୍ଗେ ଦେଲେ ରଜନ ।
ଏକ ଦନେ ବୃଷ୍ଟି ହେତୁରୁ ।
ଛଟପଟ ହେଲା ସିଂହ ନ ଖାଇବାରୁ । ୧୭ ।
ସମସ୍ତେ ଅହାର ପାଇଁ   ବୁଲି ନ ପାଇଲେ କାହିଁ
କାକ ଶୃଗାଳ ଶାର୍ଦ୍ଦୂଳ ବଚ୍ଚର କଲେ ।
ଚିତ୍ରବର୍ଣ୍ଣକୁ ଯେରୂପେ   ସ୍ୱାମୀ ମାରବ ସେରୂପେ
ଭଉ କ ଅକାର୍ଯ୍ୟ ହେବ ଏ ଓଟ ମଲେ ।
ବ୍ୟାଘ୍ର କହେ ଅଭୟ ଦେଇ ।
ଯାହାକୁ ରଖିଛ ରଜା କ କେ ମାରଇ । ୧୮ ।
କାକ କହୁଅଛି ଶୁଣ   ଅହାର ନ ପାଇ ପୁଣ
ସ୍ୱାମୀ ବର୍ତ୍ତମାନ ପାପ ହେଲେ କରବ ।
ଯେବେ ଜନନୀ କ୍ଷୁଧାର୍ତ୍ତ   ହୋଇ ତେବେ ଛଡେ ସୁତ
ଭୁଜଙ୍ଗୀ କ୍ଷୁଧାର୍ତ୍ତ ହେଲେ ଡମ୍ବ ଖାଇବ ।
କ୍ଷୁଧାରେ କ ପାପ ନ କରେ ।
କ୍ଷୀଣ ହେଲେ ଅକରୁଣ ହୁଅନ୍ତ ନରେ । ୧୯ ।
ତୁତୁରା ଖାଇ ଯେମନ୍ତ   ଯେ ହୋଏ ଚଳିତ ଚିତ୍ତ
ଯେ ଉନ୍ମାଦଗ୍ରସ୍ତ ହୋଏ ଯେହୁ କ୍ଷୁଧାର୍ତ୍ତ ।

ଯେ ମୂଢ ଶ୍ରାନ୍ତ ଭୀରୁକ ଲୁବ୍ଧ ଯେ ଯେ ଉତ୍ସୁକ
କାମୁକ ଏମାନେ ସବୁ ଅଧର୍ମବନ୍ତ ।
ଏହିରୂପ ନିଶ୍ଚୟ କଲେ ।
ସିଂହ ସମୀପକୁ ସେହି ସମସ୍ତେ ଗଲେ । ୧୦୦ ।
ସିଂହ ପଚ୍ଛରଇ କିଛି ଅହାର ଅଛି ମିଳିଛି
କାକ ବୋଲେ କିଛି ନ ପାଇଲୁଁ ରାଜନ ।
ସିଂହ କହେ କି କରିବା କିରୂପେ ପ୍ରାଣ ରଖିବା
କାକ କହଇ ଅହାର ଅଛି ସ୍ୱାଧୀନ ।
ତା ଛାଡିଲେ ବିନାଶ ଜାଣ ।
ସିଂହ ବୋଲେ କି ଅହାର ଅଛି କହଇ । ୧୦୧ ।
କାକ କହେ ଚିତ୍ରବର୍ଣ୍ଣ ଅହାର ଅଛି ସ୍ୱାଧୀନ
ସିଂହ ଭୂଇଁ ଛୁଇଁ କର୍ଣ୍ଣ ଦୁହିଁକି ଛୁଇଁ ।
ମୁହିଁ ଏହାକୁ ଅଭୟ ଦେଇ କରିଛି ନିର୍ଭୟ
ସେ କଥା କିରୂପେ କରିବ ଯୁକ୍ତ ନୋହି ।
ଗାଈ ମହୀ ସୁବର୍ଣ୍ଣ ଅନ୍ନ ।
ସବୁ ଦାନରେ ଅଭୟଦାନ ପ୍ରଧାନ । ୧୦୨ ।
ସର୍ବ କାମ ସମୃଦ୍ଧିରେ ଯେ ଯେ ଅଶ୍ୱମେଧ କରେ
ତହିଁର ଯେ ଫଳ ହୋଇ ସମସ୍ତ ହୋଇ ।
ଯେ ଶରଣ ପଶିଥାଇ ତାହାକୁ ଯେ ରଖିଥାଇ
ସେ ଫଳକୁ ଦାନ ସେହି ସ୍ୱର୍ଗକୁ ଯାଇ ।
କାକ କହେ ତୁମ୍ଭେ ନ ମାର ।
ଯେରୂପେ ସ୍ୱଦେହ ଦାନ କରେ ସ୍ୱୀକାର । ୧୦୩ ।
ସେରୂପେ କରିବୁଁ ଅମ୍ଭେ ନାହିଁ ନ କରିବ ତୁମ୍ଭେ
ସିଂହ ସେ ବଚନ ଶୁଣି ତୁନି ହୋଇଲା ।

ଏଥିଅନ୍ତେ ସେ ବାଘ୍ର ଯାଇଲା ଯେ ଅବକାଶ
କପଟରେ ସମସ୍ତଙ୍କୁ ଘେନ ଅଇଲା ।
ଯାଇ ସିଂହ ସମୀପେ ହୋଇ ।
କହେ ଦେବ ଅହାର ନ ପାଇଲ ମୁହିଁ । ୧୦୪ ।
କଇ ବହୁ ଉପବାସ ସ୍ୱାମୀ ହେଲ ମହାକ୍ଷୁଣ
ସବା ଅକାରେ ମୋ ମାଂସ ଖାଅ ଗୋସାଇଁ ।
ସ୍ୱାମୀ ଯେବେ ମରଯାଇ ଅମ୍ଭ ପ୍ରାଦ କ କରଇ
ଗଛାସ୍ଥଳ୍କି ଧନ୍ୱନ୍ତରୀ କବା କରଇ ।
ପ୍ରକୃତ ଯେ ସେ ସ୍ୱାମୀ ମୂଳ ।
ମୂଳ ନ ଥିଲା ବୃକ୍ଷରେ ଯତ୍ନ ଅଫଳ । ୧୦୫ ।
ସିଂହ ବୋଲେ ଜୀବନର ପରତ୍ୟାଗ ହୋଏ ବର
ସେବକ ମାଉ ଉଦର ପୂରଣ ସ୍ୱାନ ।
ଜମ୍ବୁକ କହେ ସେରୂପେ ସିଂହ କହେ ସେହିରୂପେ ।
ବ୍ୟାଘ୍ର କହେ ମୋ ଦେହରେ ରଖ ଜୀବନ ।
ସିଂହ କହେ ଏ ଅନୁଚିତ ।
ସେବକ ଖାଇ ରଖିବ ଯାହା ଜୀବତ । ୧୦୬ ।
ଓଟ ଏହା ଦେଖି କର ମନରେ ବଶ୍ୱାସ ଧର
ସେରୂପେ ଅପଣା ଦେହ ସମର୍ପି ହେଲା ।
ଏହାଠାରୁ ତାହା ଶୁଣି ବ୍ୟାଘ୍ର ତେଇଁ ସେହିକ୍ଷଣି
ନଖରେ ଉଦର ଚିରି ଡାକୁ ମାଇଲା ।
ଖଳ ବଚନରେ ବଶ୍ୱାସ ।
ନ କର ଯେବେ କରଇ ଅବଶ୍ୟ ନାଶ । ୧୦୭ ।
ଦୁଷ୍ଟାଷ୍ଟ କ୍ରୋଶରେ ସ୍ଥାନ କରଥିଲା ଯେ ଦୁର୍ଜ୍ଜନ
ବ୍ରାହ୍ମଣଙ୍କୁ ଦେଖିଣ ସେ କହେ ବଚନ ।

ଅହେ କହେ ବିପ୍ରବର   କାହିଁ ନେଉଛ କୁକ୍କୁର
ତାହା ଶୁଣି ସଂଭ୍ରମ ହୋଇ ବ୍ରାହ୍ମଣ ।
ସେହିଠାରେ ଛାଗ ଛାଡିଲା ।
ନଦୀରେ ସ୍ନାନକୁ କରି ଘରକୁ ଗଲା । ୧୦୮ ।
ଧୂର୍ତ୍ତେ ସ୍ୱଗୃହକୁ ଯାଇ   ଛାଗକୁ ଖାଇଲେ ନେଇ
ଏହି ହେତୁରୁ କହିଲି ଅମ୍ଭ ସମାନ ।
ଯେହ୍ନ ଜାଣଇ ପରକୁ   ସେ ପାଏ ବଡ ଦୁଃଖକୁ
ଏଥିଅନ୍ତେ ରାଜା କହେ ହେ ମେଘବର୍ଣ୍ଣ
ତୁମ୍ଭେତ ଶତ୍ରୂଙ୍କ ମଧ୍ୟରେ ।
ବହୁତ କାଳ ରହିଲ କି ପ୍ରକାରେ । ୧୦୯ ।
କାକ କହଇ ହେ ଦେବ   ସ୍ୱାମୀ କାର୍ଯ୍ୟାର୍ଥୀ ଯେ ହେବ
ଯେ ଆପଣା ପ୍ରୟୋଜନ କରି ବସଇ ।
ସେଅବା କି କ ନ କରେ   ଦେଖ ଲୋକ ସ୍ୱମୁଣ୍ଡରେ
ହେ ରାଜନ ଦାରଧ କାଷ୍ଠକୁ ବହଇ ।
ନଦୀ ବେଗ ବୃକ୍ଷ ମୂଳକୁ ।
ଧୋଇ ଦେଲେହେଁ ଉପାଡ ପକାଏ ତାକୁ । ୧୧୦ ।
ବୁଦ୍ଧିମନ୍ତ କାର୍ଯ୍ୟ ପାଇଁ   କନ୍ଧରେ ଶତ୍ରୁକୁ ବହି
ଯେହ୍ନେ ବୃଦ୍ଧ ସର୍ପ ମୁଣ୍ଡେ ମଣ୍ଡୂକ ବହି ।
ଯେତେ ଭେକ ସରୋବରେ   ଥିଲେ ତାହାଙ୍କୁ ସହିରେ
ଖାଇ ମଣ୍ଡୂକନାଥକୁ ଦେଲା ଗ୍ରାସ ନ ଦେଇ ।
ରାଜା କହେ କହ ଶୁଣିମା ।
କାକ କହୁଅଛି ଶୁଣ ଦେବ ମଣିମା । ୧୧୧ ।
ମଗଧ ଦେଶରେ କେହି   ଜୀର୍ଣ୍ଣୋଦ୍ୟାନେ ସର୍ପ ଥାଇ
ମନ୍ଦ ବିଷ ବୋଲଣ ଯେ ନାମ ତାହାର ।

ସେ ଅତି ବୃଦ୍ଧ ହେବାରେ   ଆହାରକୁ ଖୋଜିବାରେ
ଅସମର୍ଥ ହୋଇ ପଡେ ସରର ତୀର ।
ଦୂରୁ ତାକୁ ମଣ୍ଡୂକ ଦେଖି ।
ପଚାରଇ ତୁମ୍ଭେ କିପାଁ ହୋଇଛ ଦୁଃଖୀ । ୧୧୬
ସର୍ପ ବୋଲେ ମୁଁ ଗରବ   ମତେ ପଚାର କି ହେବ
ଯାଅ ବାବୁ ମୋର କର୍ମ ବୁଝୁଛି ମୁହିଁ ।
ଶୁଣି ସେ କଉତୁକରେ   ପୁଣି ସର୍ପକୁ ପଚାରେ
କହ କହ ନ କହିଲେ ମୁହିଁ ନ ଯାଇ ।
ସର୍ପ କହେ କହୁଛି ଶୁଣ ।
ବ୍ରହ୍ମପୁରେ କୌଣ୍ଡିନ୍ୟ ନାମରେ ବ୍ରାହ୍ମଣ । ୧୧୪
ତାହାର ଏକ ତନୟ   ଥିଲା ସେ ଅତି ବିନୟୀ
ସର୍ବ ଗୁଣ ସମ୍ପୂର୍ଣ୍ଣ କୋଡିଏ ବରଷ ।
ତାହାକୁ ଦୈବ ପ୍ରେରିତ   ହୋଇ କଲା ଦନ୍ତ କ୍ଷତ
ମରିଗଲା ସେହିକ୍ଷଣି ବ୍ରାହ୍ମଣ ଶିଷ୍ୟ ।
ତାକୁ ଦେଖି ତା'ହାର ତାତ ।
ଅତି ଶୋକେ ମହୀତଳେ ହେଲା ପତିତ । ୧୧୪ ।
ଏଥିଅନ୍ତେ ଶୁଣି ସର୍ବ   ବ୍ରହ୍ମପୁରର ବାନ୍ଧବ
ଚଣ୍ଡ ହୋଇ ପ୍ରବେଶ ସେଠାରେ ହୋଇଲେ ।
ଯେଣୁ ବ୍ୟସନେ ଉତ୍ସବେ   ଦୁର୍ଭିକ୍ଷ ଶତ୍ରୁ ବିପ୍ଳବେ
ରାଜଦ୍ୱାରେ ଶ୍ମଶାନରେ ଏତେ ସ୍ଥାନରେ ।
ସହାୟ ଯେ ହୋଇ ବାନ୍ଧବ ।
ତାଙ୍କୁ ଜାଣ କହିଛନ୍ତି ଦେବାଧିଦେବ । ୧୧୫ ।
ତାହାଙ୍କ ମଧ୍ୟେ କୁଶଳ   ସ୍ନାତକ ନାମେ କପିଳ
ସେ କହିଲେ ରେ କୌଣ୍ଡିନ୍ୟ ତୁ ବଡ ମୂର୍ଖ ।

ବିଳାପ କରୁଛୁ ଯାହା ଶୁଣିବ କେ ଅବା ତାହା ,
ଶାସ୍ତ୍ର କହୁଛି ସଂସାରେ ଅଛି କି ସୁଖ ।
ଶୁଣ ତୁ କହୁବା କିମରେ ।
ଏହା ଶୁଣି ସ୍ଥିର କରି ରଖ ମନରେ । ୧୧୬ ।
ଯେଣୁ ଏ ସଂସାରେ ଜନ ଜାତ ହୋଏ ଯେ କ୍ଷଣ
ସେହିକ୍ଷଣି ଅନତ୍ୟତା ତାକୁ ଧରଇ ।
ତଦନ୍ତରେ ଧାଇ ଧରେ ଧରେ ଜନନୀ ପଛରେ
ଏଣୁ ଏ ଶୋକର କିମ କହ ନୁହଇ ।
ସୈନ୍ୟବଳ ବାହନ ଯେନ ।
ବାହୁଗଲେ ରାଜାମାନେ ଏହା ନ ଜାଣି । ୧୧୭ ।
ଏ ଯେଉଁ ଦେହ ଦିଶୁଛି ଏହିତ ନୁହଇ କିଛି
ଯେଉଁଠାରେ ସମ୍ପତ୍ତି ସେଠାରେ ବିପତ୍ତି ।
ପୁତ୍ର ଭ୍ରାତୃ ଭାର୍ଯ୍ୟା ସଙ୍ଗ କ୍ଷଣକେ ହୋଏ ବିଭଙ୍ଗ
ଜାତ ହେଲେ ସବୁ ଦ୍ରବ୍ୟ କେହି ନୁହନ୍ତି ।
ସମସ୍ତଙ୍କୁ ଜାଣ ଅନତ୍ୟ ।
କେବଳ ପରମ ଅଗ୍ନୁ ଅଟଇ ସତ୍ୟ । ୧୧୮ ।
ପ୍ରତିକ୍ଷଣେ ଏହି କାୟ ଶୀର୍ଣ୍ଣ ହୁଅଇ ନିଶ୍ଚୟ
ଏମନ୍ତ ହେଲେ ତା କେହି ନ ପାରେ ଜାଣି ।
ଅପୋଡା ଭାଣ୍ଡ ଯେରୂପେ ପାଣି ଉପରେ ସେରୂପେ
ମିଳାଇ ଗଲେ ଜାଣନ୍ତି ସମସ୍ତ ପ୍ରାଣୀ ।
କ୍ରମେ କ୍ରମେ ଶୀର୍ଣ୍ଣ ହୁଅଇ ।
ଯେସନେ କଞ୍ଚା ମାଟିଅ ଜଳରେ ମିଳାଇ । ୧୧୯ ।
ସଂସାରେ ଜନ୍ମ ଯାହାର ଦିନକୁଦିନ ତାହାର
ଅତି ନିକଟକୁ ଅସେ ମୃତ୍ୟୁ ପ୍ରମାଣ ।

ଯେରୂପେ ମାରଣ ସ୍ଥାନ ମାରିବାକୁ ଯେଉଁଜନ
ନେଇ ଚାଲି ପଦେ ପଦେ ସେରୂପ ଜାଣ ।
ଯଉବନ ନୃପ ଜୀବନ ।
ଐଶ୍ୱର୍ଯ୍ୟ ଧନ ପିରତି ଅନିତ୍ୟ ଜାଣ । ୧୬୦ ।
ଯେତେ ଅମ୍ବୁରେ ସମେତ କାଷ୍ଠରେ କାଷ୍ଠ ସଙ୍ଗତ
ହୋଇ ପୁଣି ବ୍ୟପଗତ ହୋଏ କାଳରେ ।
ସେରୂପରେ ପୁତ୍ର ମିତ୍ର ଜ୍ଞାତି ଦୁହିତ୍ର କଳତ୍ର
ସଙ୍ଗତ ହୁଅନ୍ତି ଅସଙ୍ଗତ ସଂସାରେ ।
ଏହିହେତୁ ଯୋଗ ବିଯୋଗ ।
ଜୀବ ଶରୀର ଦୁଇରେ ହୁଅଇ ଭୋଗ । ୧୬୧ ।
ପୃଥିବୀ ଯେ ଜଳ ବାତ ଅଗ୍ନି ଖ ଯେ ପଞ୍ଚଭୂତ
ଏଥିରେ ନିର୍ମିତ ଦେହ ପଞ୍ଚତ୍ୱ ପାଇ ।
ଯେ ଯେଉଁ ଯୋନିରୁ ଜାତ ପୁଣି ତାହାଙ୍କୁ ପ୍ରାପତ
ହେଲେ ଯେବେ ଧୀର ଜନ ଶୋକ ନ ପାଇ ।
ଯେତେ ମନେ ସଂକଳ୍ପ କରେ ।
ତେତେକ ଶୋକ ଶଙ୍କୁ ତା ହୃଦ ବିଦାରେ । ୧୬୨ ।
ଯେହି କେହି ଜନ ତାର କଉଣସି ଶରୀରର
ସମ୍ବନ୍ଧ ନିତ୍ୟ ନୁହଇ ଏହା ତୁ ଜାଣ ।
ସ୍ୱକୀୟ ଶରୀରେ ଯାର ପ୍ରଭୁତ୍ୱ ନାହିଁ ତାହାର
ଅନ୍ୟ ବାହ୍ୟ ଲୋକେ ଅବା କି ପ୍ରଭୁପଣ ।
ସଂଯୋଗ ଯେ ବିଯୋଗ କହେ ।
ଯେରୂପେ ଜନ୍ମ ମରଣ ଅଗମ ହୁଏ । ୧୬୩ ।
ଏ ଯେଉଁ ଦାରିଦ ଯୋଗ ହେବାରୁ ଯେ ହୋଏ ଭୋଗ
ପ୍ରଥମରେ ସୁଖ କରି ଦେଖା ମଣଇ ।

ପ୍ରାନ୍ତରେ ଦୁଃଖ ଅନେକ  ପାଇ କରଇ ସେ ଶୋକ
ଯେରୂପେ ଅପଥ୍ୟ ଅନ୍ନ ପ୍ରଥମୁ ଖାଇ ।
ସୁଖକର ମଣଇ ଜନ ।
ପ୍ରାନ୍ତରେ ରୋଗ ପୀଡ଼ାରେ ଭରେ ବେଦନ । ୧୨୪ ।
ସରିତମାନଙ୍କ ସ୍ରୋତ  ଯେସନେ ଗଳଇ ସନ୍ତତ
ସେ ପୁଣି ଲେଉଟି ଉପରକୁ ନ ଯାଇ ।
ସେହିରୂପେ ସବୁକାଳ  ରାତ୍ରି ଦିବସ ଯୁଗଳ
ମାନବମାନଙ୍କ ଅୟୁ ଘେନି ଚଳଇ ।
ସାଧୁ ସଙ୍ଗରେ କଛି ସୁଖ ।
ପ୍ରାନ୍ତେ ବିୟୋଗ ହେଉଣୁ ସେ ବଡ଼ ଦୁଃଖ । ୧୨୫ ।
ଏହି ହେତୁରୁ ସଜ୍ଜନ  ସଙ୍ଗ ନ ଇଚ୍ଛଇ ଜନ
ଯେଉଁ ହେତୁ ତା ବିରହ ଖଡ଼ଗ ପ୍ରାୟେ ।
ସେ ଅଗ୍ନିରେ ଛିଡ଼ ମନ  ପ୍ରତିକ୍ଷଣେ ଛିନ ଛିନ
ହୋଇ କେବେ ସୁସ୍ଥ ନାହିଁ ସୁଖ ନ ପାଏ ।
ଖଡ୍ଗେ ଛିଡ଼ଥିଲେ, ଔଷଧ ।
ଜାଇ ବିରହ ଦୁଃଖକୁ ନାହିଁ ଔଷଧ । ୧୨୬ ।
ସଗରାଦ ରାଜା ଥିଲେ  ବହୁ ପୁଣ୍ୟ କରୁଥିଲେ
କର୍ମ ସହିତରେ ସେହିମାନେତ ଗଲେ ।
ମନୁଷ୍ୟ ଯେ ବିଚକ୍ଷଣ  ମୃତ୍ୟୁ ଉଗ୍ର ଦଣ୍ଡେ ମନ
ଦେଇ ବିଚାରି ଏ ଯତ୍ନ ଦଣ୍ଡେ ନ କରେ ।
ବିଚାରଇ ଏ ଚର୍ମ ପାଶ ।
ବର୍ଷାକାଳେ ପାଣି ପଡ଼ ହୁଅଇ ନାଶ । ୧୨୭ ।
ପ୍ରଥମୁଁ ଯେଉଁ ରାତ୍ରିରେ  ଗର୍ଭରେ ନିବାସ କରେ
ଜନ ସେ କାଳ ଆରମ୍ଭି ଅନିବାରିତ ।

ହୋଇ ଯାଇ ମୃତ୍ୟୁ ମୁଖ   ନାହିଁ କିଛି ଏଥି ସୁଖ
ଅତଏବ ହୋଇ ବିମୁଖ କହେ ବିଜାତ ।
ଏଥିଅନ୍ତେ କେ ଶ୍ରେଷ୍ଠ ଜାଣ ।
ଏ ଯେ ଶୋକ କରୁଅଛ ସବୁ ଅଜ୍ଞାନ । ୧୬୮ ।
ବିଯୋଗ କାରଣ ହୋଇ   ଅଜ୍ଞାନ କାରଣ ନୋହି
ଏମନ୍ତ ଯେବେ ବୋଲିବା ଦେଖୁ ନାହିଁକି ।
ଜନମାନେ ଗୃହଯାନ୍ତେ   ଶୋକ ଅଧିକ ବଢ଼ନ୍ତେ
ଆତ୍ମହତ୍ୟା ଦୋଷ ତାଙ୍କେ ଲାଗୁ ନାହିଁକି ।
ସେହିହେତୁ ଆତ୍ମରକ୍ଷଣ ।
କର ତୁ ବେଗରେ ତେଜ ଶୋକ ଗହନ । ୧୬୯ ।
କି ଶ୍ରେୟ ଜାତ ନାହିଁ   ଅର୍ଦ୍ଧ ମର୍ମଭେଦୀ ହୋଇ ।
ଅତଏବ ଶତ୍ରୁ ଯେଉଁ ଶୋକ ପ୍ରହାର ।
ଚିନ୍ତା ଛାଡ଼ ରହିବାର   ପରମ ଔଷଧ ତାର
ଏ ଔଷଧ ପାନ କର କି ଚିନ୍ତା ଛାର ।
ଶୁଣି ଉଠେ କୌଣ୍ଡିନ୍ୟ କହି ।
ଗୃହ ନରକ ବାସରେ ମୋ କାର୍ଯ୍ୟ ନାହିଁ । ୧୭୦ ।
ବନକୁ ଯିବାର ଭଲ   ଶୁଣି ବୋଇଲେ କପିଳ
ଯେଉଁମାନେ ରାଗୀ ତାଙ୍କର ବନେ ଦୋଷ ।
ହୁଅଇ କରନ୍ତି ଯେବେ   ଇନ୍ଦ୍ରିୟ ନିଗ୍ରହ ତେବେ
ଗୃହରେ ଥିଲେହେଁ ସେ ହୁଅନ୍ତି ତାପସ ।
ଯେ ଅନନ୍ୟ କର୍ମ କରଇ ।
ବିରାଗର ଗୃହ ତପୋବନ ହୁଅଇ । ୧୭୧ ।
ଯହିଁ ତହିଁ ଆଶ୍ରମରେ   ଥାନ୍ତି ଦୁଃଖୀ ଯେଉଁ ନରେ
ସେମାନେ ଯେବେହେଁ ଧର୍ମ ଅଭ୍ୟାସ କରନ୍ତି ।

ସ୍ତୁତାରେ ସମବୁଦ୍ଧି    ହୁଅନ୍ତି ସେ ଅତି ସିଦ୍ଧି
ପାଆନ୍ତି ଧର୍ମ ହେତୁକୁ ଚିତ୍ତ ହୁଅନ୍ତି ।
ଜୀବନ ନିମନ୍ତେ ଭୋଜନ ।
ତାହାଙ୍କର ସନ୍ତତି ନିମନ୍ତେ ମୈଥୁନ । ୧୩୨ ।

ସତ୍ୟ ରକ୍ଷିବାର ପାଇଁ    ମିତଭାଷୀ ଯେ ହୁଅଇ
ତରନ୍ତି ଦୁର୍ଗମାନଙ୍କୁ ସେ ଜନମାନେ ।
ସଂଯମ ସେ ପୁଣ୍ୟ ତୀର୍ଥ    ଯହିଁରେ ଉଦକ ସତ୍ୟ
ଶୀଳ ତଟ ଦୟା ଉର୍ମି ଯହିଁ ଏମାନେ ।
ସେ ଆତ୍ମାନଦୀରେ ସ୍ନାହାନ ।
ବାରରେ ଶୁଦ୍ଧ ନୁହଇ ଅନ୍ତଃକରଣ । ୧୩୩ ।

ଜରା ଜନମ ମରଣ    ବ୍ୟାଧି ପୀଡ଼ା ଅନୁକ୍ଷଣ
ଅନୁଭବ ହେଉଛୁ ଏହେତୁ ଅସାର ।
ଏ ଯେତେ ସଂସାର ତ୍ୟାଗ    କଲା ଯେ ହୋଇ ବିରାଗ
ସେ ସର୍ବଦା ସୁଖୀ ତାର ସ୍ୱର୍ଗ କି ଛାର ।
ଏ ସଂସାରେ କେବଳ ଦୁଃଖ ।
ଦୁଃଖାର୍ଥ ପ୍ରତି କରଣ ବୋଲାଇ ସୁଖ । ୧୩୪ ।

କୌଣ୍ଡିନ୍ୟ କହେ ଏକଥା    ଏହିରୂପେ ଏ ସର୍ବଥା
ଶୋକାକୁଳ ହୋଇ ଶାପ ଦେଲା ବ୍ରାହ୍ମଣ ।
ଏତେ ଅନ୍ୟାୟ ତୁ କଲୁ    ମୋର ପୁତ୍ରକୁ ଖାଇଲୁ
ଅଜଠାରୁ ଭେକଙ୍କର ହୁଅ ବାହନ ।
ପୁନରପି କପିଲ କହି ।
ଉପଦେଶ ସହି ତୋ ହୃଦୟ ନୁହଇ । ୧୩୫ ।

ଶୁଣ ଯେ ସର୍ବ ଯତ୍ନରେ    ସଙ୍ଗକୁ ଛାଡ଼ି ନ ପାରେ
ସାଧୁ ସଙ୍ଗ କରେ ସେ ସଂସାରେ ଭେଷଜ ।

ସର୍ବ ଯତ୍ନେ କାମ ତ୍ୟାଗ   କର ନ ପାରବ ଯେବେ
ମୁକ୍ତି ଇଚ୍ଛା କାମନା କର ସେ ତୁ।‌ ଭେଷଜ ।
ତା ଶୁଣି କୌଣ୍ଡିନ୍ୟ ବ୍ରାହ୍ମଣ ।
ଶୋକ ଛାଡ଼ି ସନ୍ୟାସ କଲା ସେକ୍ଷଣ । ୧୩୬ ।
ଏଥୁଅନ୍ତରେ ବ୍ରାହ୍ମଣ   ଶାପର ଉପଶମନ
କରିବା ପାଇଁ ଏଠାରେ ରହିଛ ମୁହିଁ ।
ଏହା ଶୁଣିଣ ଶଙ୍କର   ଗଲ୍ଲା ହୋଇ ଅତି ଖର
ମୁ ପ୍ରଭୁ ଜାଲପାଦର ଆଗରେ କହି ।
ଜାଲପାଦ ସର୍ପ ପିଠିରେ ।
ବସିଲା ଯେ ତାକୁ ଯେନ ଗଲା ସତ୍ୱରେ । ୧୩୭ ।
ଆର ଦିନ ବହିବାରେ   ଅସମର୍ଥ ଦେଖି ତାରେ
ମଣ୍ଡୁକରାଜ କହିଲା କି ମନ୍ଦ ଚାଲ ।
ସର୍ପ କହଇ ଅହାର   ବିରହରୁ ମୁ ଦୁର୍ବଳ
ଶୁଣି ସେ କହିଲା ଭେକ କର ଅହାର ।
ଏହି ମହାପ୍ରସାଦ ମୋର ।
କ୍ଷିରେ ଯେନ ସର୍ପ କଲା ଭେକ ଅହାର । ୧୩୮ ।
ନିର୍ମଣ୍ଡୁକ ସରୋବର   ଦେଖିଲା ସେ ବିଷଧର
ଜାଲପାଦ ମଣ୍ଡୁକ ନାଥକୁ ଖାଇଲା ।
ଏହି ହେତୁରୁ କହଇ   କାଳରେ ଶତ୍ରୁକୁ ବହି
ମାରିବ ଅନ୍ୟଥା କଲେ ଅପଣ ମଲା ।
କାକ କହେ ଏ କଥା ରହୁ ।
ପୂର୍ବ ଚରିତ କହିଲେ କି ହେବ ଆଉ । ୧୩୯ ।
ସର୍ବଥା କର ସନ୍ଧାନ   ହିରଣ୍ୟଗର୍ଭ ରାଜନ
ବୁଦ୍ଧିକି ଯୋଗ୍ୟ ଏମନ୍ତ ମୁହିଁ ମଣଇଁ ।

ରାଜା କହେ କାକବର   ତୁମ୍ଭେତ ବର୍ତ୍ତୁର କର
ଅମୃତ ଏହି ଜଡ ହୋଇ ଅଛନ୍ତି ।
ଜମ୍ବୁଦ୍ୱୀପରୁ ଏ ସମୟେ ।
ଶୁକ ଆସି ଚିତ୍ରବର୍ଣ୍ଣ ଆଗରେ କହେ । ୧୪୦ ।
ଦେବ ସିଂହଳଦ୍ୱୀପର   ରାଜା ନାମେ ମହାବଳ
ସାରସ ଜମ୍ବୁଦ୍ୱୀପକୁ ବସିଛୁ ମାତ ।
ସସଂଭ୍ରମ ରାଜା ହୋଇ   କି କି ବୋଲି ପୁଣ କହୁ
ଶୁକ ପୁଣି କହିଲା ସେ କଥା ଗଡ଼ାଇ ।
ଗୃଧ୍ର ଶୁଣି ମନେ ବର୍ତ୍ତଇ ।
ସାଧୁ ଚକ୍ରବାକ ବୋଲି ପ୍ରଶଂସା କରଉ । ୧୪୧ ।
ରାଜା କ୍ରୋଧ ହୋଇ କହେ   ଏକଥା ଏରୂପେ ହୁଏ
ହେଉ ମୁଁ ଯାଇ ପ୍ରଥମେ ତାକୁ ବିନାଶି ।
ଶୁଣି ହସି ଦୀର୍ଘଦର୍ଶୀ   କହଇ ହେ ରାଜଋଷି
ଶରତ୍ମେଘ ଗର୍ଜନେ କି ଜଳ ବରଷି ।
ବଡ ଲୋକ ଧୀର ମାନସ ।
ପରକାର୍ଯ୍ୟ ଅକାର୍ଯ୍ୟ କି କରେ ପ୍ରକାଶ । ୧୪୨ ।
ରାଜା ଏକାବେଳକରେ   ବହୁତ ଶତ୍ରୁ ସଙ୍ଗରେ
ବିରୋଧ ନ କରେ କଲେ ଆପେ ମରଇ ।
ବିଷରେ ଉଦ୍ଧତ ହୋଇ   ସର୍ପ ଯେବେ ଏକା ଥାଇ
ବହୁ ସର୍ପରେ ବିରୋଧ କଲେ କି କଇ ।
ଏହାପାରେ ପ୍ରୀତି ନ କରଉ ।
ଏଠାରୁ କି ଅମ୍ଭ ରାଜ୍ୟ ଗମନ କରଉ । ୧୪୩ ।
ଯେବେ ପ୍ରୀତି ନ କରଣ   ଅମ୍ଭେ ଯିବା ହେ ରାଜନ
ଏ ରାଜା ଆମ୍ଭର ପଛେ ପ୍ରକୋପ କରି ।

ବହୁତ ସୈନ୍ୟ ଘେନଣ   କରିବ ସେ ମହାରଣ
ଖଗପକ୍ଷେ ଏହାର ଅଛନ୍ତି ସହନ ।
ଖଗପକ୍ଷ ମିଶି ମାରିବେ ।
ଆମ୍ଭର ଯେତେକ ସୈନ୍ୟ ସବୁ ସାରନ୍ତେ । ୧୪୪ ।

ଏ କାର୍ଯ୍ୟ ଏରୂପେ ହୋଏ   ତାହା ନ ଜାଣି ଯେ କହେ
କେହୁ ବଡ ଲୋକ ଯେବେ କରଇ କୋପ ।
ଯେରୂପେ ଏକ ବ୍ରାହ୍ମଣ   ନ ଜାଣି କାର୍ଯ୍ୟ କାରଣ
ନକୁଳକୁ ମାରି କଲା ବଡ ସନ୍ତାପ ।
ସେହିରୂପେ ମୂର୍ଖ ଯେ ତାପ ।
ପାଇ ପଛେ ବୋଲଇ ସେ ଥିଲା କି ପାପ । ୧୪୫ ।

ରାଜା ଶୁଣି ପଚାରଇ   ଏକଥା କରୂପେ ହୋଇ
କହ ଶୁଣି ଦୀର୍ଘଦର୍ଶୀ ପୁଣି କହଇ ।
ଉଜ୍ଜୟିନୀ ନଗରରେ   ଥିଲା ମାଧବ ନାମରେ
ଦ୍ୱିଜ ତା ଭାର୍ଯ୍ୟାର ସୁତ ଜନମ ହୋଇ ।
ସେ ବାଳକ ରକ୍ଷଣ ପାଇଁ ।
ଦ୍ୱିଜକୁ ସେଠାରେ ରଖି ଗଲା ଗାଧୋଇ । ୧୪୬ ।

ରାଜାର ପରବ ଶ୍ରାଦ୍ଧ   କରିବା ପାଇଁ ପ୍ରସିଦ୍ଧ
ଲୋକ ଆସି ବ୍ରାହ୍ମଣକୁ ଆସ ବୋଇଲା ।
ଶୁଣି ସେହୁ ଅତି ଦୀନ   ବ୍ରାହ୍ମଣ ବିଚାରେ ମନ
ଯେବେ ମୁଁ ବେଗେ ନ ଯିବ ଅନର୍ଥ ହେଲା ।
ଅନ୍ୟ କେହୁ ଶ୍ରାଦ୍ଧ କରିବ ।
ଯେ ସାମଗ୍ରୀ ଥିବ ତାହା ଘରକୁ ନେବ । ୧୪୭ ।

ଧନ ଅଣିମା ଦେବାର   ଯେତେ କର୍ମ କରିବାର
ତାହା ବେଗରେ କରିବ ବଳମ୍ବ ନୋହି ।

ଏ ଯେବେ ତ୍ରମ୍ପ ତାହାଙ୍କ ଥାଲ କରଇ ଅହାର
ଗଲେ ଏ ବାଳକ ରକ୍ଷା କଏ କରଇ ।
କ. କରବ କରୂପେ ଯିବ ।
ବାଳକକୁ ରକ୍ଷା ମୁଁ କରୂପେ କରବ । ୧୪୮ ।
ହେଉ ଅଛ ଚିରକାଳ ପାଳିଛ ଏହ ନକୁଳ
ପୁଏ ତୁଲ୍ୟ ଏହାଙ୍କୁ ମୁଁ ରଖି ଏଠାରେ ।
ଯିବ ମୁଁ ବୋଲି ନକୁଳ ରଖାଇ ପୁଏ ପାଖର
ବେଗରେ ପ୍ରବେଶ ହେଲେ ରାଜ ନଗରେ ।
ସେ ନକୁଳ ବାଲ ସମୀପ ।
ଅସୁଥିଲେ ଦେଖିଲେ ସେହ କୃଷ୍ଣ ସର୍ପ । ୧୪୯ ।
ଦେଖି ମାଇଲେ ତାହାଙ୍କୁ ଏଥୁଅନ୍ତେ ବ୍ରାହ୍ମଣଙ୍କୁ
ଦୂରରୁ ଦେଖି ନକୁଳ ସତ୍ବରେ ଯାଇ ।
ପଡ଼େ ବ୍ରାହ୍ମଣ ଚରଣ ଦେଖିଣ ତାକୁ ବ୍ରାହ୍ମଣ
ପାଣି ପାଦ ରକ୍ତ ଦେଖି ଦଣ୍ଡେ ମାରଇ ।
ଏ ପୁଅକୁ ଖାଇଲେ ମୋର ।
ନୋହିଲେ କପାଁ ରକତ ମୁଖ ଏହାର । ୧୫୦ ।
ଏଥୁଅନ୍ତେ ସେ ବ୍ରାହ୍ମଣ ଗୃହରେ ପ୍ରବେଶକ୍ଷଣ
ଦେଖିଲେ ସେ ସର୍ପ ମର ପୁତ୍ର ଶୋଇଛୁ ।
କ କଲ ମୁହିଁ ବୋଇଲେ ବହୁତ ବ୍ୟାକୁଳ ହେଲେ
ଅକାରଣ କ୍ରୋଧୀ ଜନ ନୁହଇ କଛୁ ।
ସେହିରୂପେ ତୁମ୍ଭେ ପ୍ରତାପ ।
କଲ ଯେଣୁକର ପୁଣି ହେବ ସନ୍ତାପ । ୧୫୧ ।
ଆଉ କଥା ଦେବ ଶୁଣ କାମ କ୍ରୋଧ ଲୋଭମାନ
ଦର୍ପ ମଦ ଏ ଷଡ୍‌ବର୍ଗ ଯେ ନୃପ ଛଡେ ।

ସେହି ରାଜା ବଡ଼ ସୁଖୀ କେବେହେଁ ନୁହଇ ଦୁଃଖି
ରାଜା କହେ ମନ୍ତ୍ରୀ ତୋ କଣ୍ଟର୍ପ ଏ ହିତ ।
ମନ୍ତ୍ରୀ କହେ ଏରୂପେ ଏହି ।
ଏ କର୍ମର ଅନ୍ୟ କଲେ ଭଲ ନୁହଇ । ୧୫୨ ।
କାର୍ଯ୍ୟରେ ତାତ୍ପର୍ଯ୍ୟ ଯୁତ ବିତର୍କ ଜ୍ଞାନ କଣ୍ଠିତ
ସ୍ଥିରହି ମନ୍ତ୍ର ଗୋପନ ମନ୍ତ୍ରିର ଗୁଣ ।
ବଡ଼ିଇ କାର୍ଯ୍ୟକୁ କର ଅବସରେ ଜାଣ ଶିର
ବଡ଼ିଇ କାର୍ଯ୍ୟକୁ କଲେ ତୁମ୍ଭେ ପ୍ରଧାନ ।
ହେବ ଏଥି ନାହିଁ ସନ୍ଦେହ ।
ଯେଣୁ ଗୁଣଜନ୍ତ୍ର ଜନ ଲକ୍ଷ୍ମିର ଗୃହ । ୧୫୩ ।
ଏହିହେତୁରୁ ମୋ ବାଣୀ କର ଯେବେ ନୃପମଣି
ତେବେ ବର୍ତ୍ତମାନ ସନ୍ଧି ଯାଅ କରଣ ।
କାର୍ଯ୍ୟ ସାଧନରେ ଯୁକ୍ତ ଉପାୟକୁ ଯେବେ କର
କେବଳ ଗଣନା ମାଏଁ କରିବା ଜାଣ ।
କାଳନାରେ କାର୍ଯ୍ୟର ସିଦ୍ଧି ।
ଅନ୍ୟ ଉପାୟକୁ କଲେ ହୁଅଇ ଯଦି । ୧୫୪ ।
ରାଜା କହେ କରୁପରେ ଏ କାର୍ଯ୍ୟ ହେବ ସହରେ
ମନ୍ତ୍ରୀ କହେ ଶୀଘ୍ର ହେବ ନାହିଁ ବରର ।
ମୃତ୍ତିକା ଘଟ ପରାଇ ଭାଙ୍ଗଲେ ସନ୍ଧାନ ନୋହି
ଦୁର୍ଜ୍ଜନ ଲୋକ ସୁଜନ ସୁଖ ସନ୍ଧାନ ।
ଯେଉଁରୂପେ କନକ ଘଟ ।
ଭାଙ୍ଗଗଲେ ସେହିକ୍ଷଣି ହୋଏ ସଂଘଟ । ୧୫୫ ।
ଅଜ୍ଞ ଯେଉଁ ଲୋକ ହୋଇ ସୁଖରେ ଅରାଧ୍ୟ ସେହି
ଯେ ପଣ୍ଡିତ ସେହି ବଶେଷରେ ସୁସେବ୍ୟ ।

ଅତି ଅଳ୍ପ ଜ୍ଞାନ ଥାଇ　ଏମନ୍ତ ଯେ ଲୋକ ହୋଇ
　　ତାକୁ ବଶ କରିବାକୁ କି ବ୍ରହ୍ମା ହେବ ।
　　　　ବିଶେଷରେ ସେ ରାଜା ପୁଣି ।
　　ସର୍ବଜ୍ଞ ସେ ଚନ୍ଦ୍ରବାକ ଏ ଦୁହେଁ ଗୁଣୀ । ୧୫୬ ।
ମେଘବର୍ଣ୍ଣ କହିବାରୁ　ତାର କାର୍ଯ୍ୟ ଦେଖିବାରୁ
　　ଜାଣ ରାଜା ମନ୍ତ୍ରୀ ଦୁହେଁ ଅଗାଧ ଗୁଣ ।
ପରୋକ୍ଷରେ ଗୁଣ ବୃତ୍ତି　କର୍ମେ ଅନୁମାନ ହୁନ୍ତି
　　ସବୁଠାରେ ଫଳେ କର୍ମ ପ୍ରକାଶ ଜାଣ ।
　　　　ରାଜା କହେ ଥାଉ ବଚନ ।
　　ତୁମ୍ଭର ଯେ ଇଚ୍ଛା ଅଛି କର ବହନ । ୧୫୭ ।
ଏମନ୍ତ କହି ବକ୍ସର　ଗୃଧ୍ର ଗଡର ଭିତର
　　ଗଲେ ତହିଁ ଯେ ଯେରୂପେ ଯୋଗ୍ୟ ବେଭାର ।
ସେହିରୂପରେ କରବ　ଏଥି କିଛି ନ ହୁଡବ
　　ଏମନ୍ତ କହିଣ ପଠିଥିଇଲେ ଚର ।
　　　　ରାଜହଂସ ଶୁଣି କହୁଛି ।
　　ମନ୍ତ୍ରୀ ପୁଣି ସନ୍ଧି ପାଇଁ କେ ଅସିଅଛି । ୧୫୮ ।
ସର୍ବଜ୍ଞ ହସି କହଇ　ଶଙ୍କା କର କାହିଁ ପାଇଁ
　　ଯେଣୁ ମହାଶୟ ଅଟେ ସେ ଦୂରଦର୍ଶୀ ।
ନାହିଁ ଅବା ମନ୍ଦ ମତି　ମାନଙ୍କର ଏହି ସ୍ଥିତି
　　ସଦା ଶଙ୍କା କରଇ ଯେ ସେ ମନ୍ଦ ମୂର୍ଖୀ ।
　　　　କଦାଚିତ ଶଙ୍କା କରଇ ।
　　ପୁଣି କଦାଚିତ ଶଙ୍କା ମନୁ ଛାଡଇ । ୧୫୯ ।
କୁଶଳ ହଂସ କଣାରେ　ଦେଖି ସରୋବର ଜଳେ
　　'ତାରା ପ୍ରତିବିମ୍ବକୁ କୁମୁଦ ଶଙ୍କାରେ ।

ଖୋଜଇ ତା ଜନ୍ମସ୍ଥାନ ଦବଶେ ବଷ ପ୍ରସୂନ
ଦେଖି ତା ପୁଣି ନ ଖାଇ ତାଗ୍ଭନ୍ଧରେ ।
ଭ୍ରମକୁ ଭଜଇ ଯେ ଲୋକ ।
ତାର ସତ୍ୟ ମିଥ୍ୟା ବୋଲି ନୋହେ ବବେକ । ୧୬୦ ।
ଏହହେତୁରୁ କେବଳ ଯଥା ଶକ୍ତି ଉପହାର
ତା ପୂଜା ନିମିତ୍ତେ କର ସତ୍ୱର ହୋଇ ।
ତାହା ଶୁଣି ସେହରୂପେ କରନ୍ତେ ତା ଅନୁରୂପେ
ଗୃଧ୍ର ମନ୍ତ୍ରୀ ଯାଇ ଦୁର୍ଗ ଦ୍ୱାରେ ହୁଅଇ ।
ଚକ୍ରବାକ ସହତ ହେଲା ।
ଚକ୍ରବାକ ଦେଇ ଆସନରେ ବସିଲା । ୧୬୧ ।
ଚକ୍ରବାକ କହେ ପୁଣ ଅହେ ମହାମନ୍ତ୍ରୀ ଶୁଣ
ତୁମ୍ଭର ଏ ରାଜ୍ୟ ଅମ୍ଭେ ତୁମ୍ଭର ଜାଣ ।
ଶୁଣି ଗୃଧ୍ର ମନ୍ତ୍ରୀ କହ ଏକଥା ଏରୂପେ ହୋଇ
ବହୁତ ବସ୍ତାର କଥା ଅପ୍ରୟୋଜନ ।
ଯାହା କହୁଅଛୁ ତା ଶୁଣ ।
ଅର୍ଥରେ ବଶ ହୁଅଇ ଯେ ଲୋଭଜନ । ୧୬୨ ।
ଯେ ହୋଏ ଉଦ୍ଧତ ନର ହସ୍ତ ଯୋଡ ବଶ କର
ତାକୁ ପୁଣି ମୂର୍ଖଜନକୁ ବଶ କର ।
ତାହାର ମନକୁ ଚାହିଁ ତା ମନକୁ ଯେ ଯୋଗାଇ
କହ ପଣ୍ଡିତ ଲୋକକୁ କର ଆଦର ।
ଯଥାର୍ଥ କହ କର ବଶ ।
ଯେ ଯେଉଁ ଭାବେ ହେବ ତା କର ଅବଶ୍ୟ । ୧୬୩ ।
ମନର ସ୍ୱଚ୍ଛତା ଯେବେ ମୈତ୍ର ବଶ ହୋଇ ଦେବେ
ବାନ୍ଧବକୁ ଏହରୂପେ ବଶ କରବ ।

ମାନସମ୍ମାନନା ପାଇ   ନାଶ୍ର ଉଚ୍ଚ୍ୟ ବଶ ହୋଇ
କପଟ ନ କଲେ ଅନ୍ୟ ବଶ ନୋହିବ ।
ଚକ୍ରବାକ କହଇ ହେଉ ।
ଯେରୂପେ ପ୍ରୀତ ହୋଇବ କହିବା ହେଉ । ୧୬୪ ।
ରାଜହଂସ କହୁଛନ୍ତ   ଶୁଣ ଅହେ ଗୃଧ୍ରମନ୍ତ୍ରୀ
ସନ୍ଧିର କେତେ ପ୍ରକାର କହିବା ହେଉ ।
ଗୃଧ୍ର କହେ ଶୁଣ ନୃପ   ସନ୍ଧିର ଯେତେ ସ୍ୱରୂପ
କ୍ରମରେ କହିବା ତାହା ଶୁଣିମା ହେଉ ।
ବଳବନ୍ତ ଶତ୍ରୁ ଯାହାକୁ ।
ପୀଡ଼ା ଦେଇ ସେହି ନୃପ କରେ ତାହାକୁ । ୧୬୫ ।
ଯେ ବ୍ୟପଉଗ୍ରସ୍ତ ହୋଇ   ସେ ନୃପ ସନ୍ଧି କରଇ
ଯଥା କଥା କର କରେ କାଳଯାପନ ।
ପ୍ରଥମ ସନ୍ଧି କପାଳ   ଦ୍ୱିତୀୟ ହେ ଉପହାର
ତୃତୀୟ ସନ୍ଧିର ନାମ ଅଟେ ସନ୍ତାନ ।
ଚତୁର୍ଥର ନାମ ସଙ୍ଗତ ।
ଉପନ୍ୟାସ ପ୍ରତୀକାର ସଂଯୋଗ ସପ୍ତ । ୧୬୬ ।
ପୁରୁଷାନ୍ତର ଅଷ୍ଟମ   ଅଦୃଷ୍ଟ ନର ନବମ
ପୁଣି ଅଦଷ୍ଟ ଦଶମ ଏଗାର ହୋଇ ।
ପଡୁଦଷ୍ଟ ଉପଗ୍ରହ   ଦ୍ୱାଦଶ କର ସଂଗ୍ରହ
ପରକ୍ରୟ ତ୍ରୟୋଦଶ ସଂଖ୍ୟା ଗଣଇ ।
ଉଚ୍ଛିନ୍ନ ଯେ ପରଭୂଷଣ ।
ସ୍କନ୍ଧୋପନେୟକୁ ଗଣି ଷୋଡଶ ଜାଣ । ୧୬୭ ।
ତୁଲ୍ୟ ସନ୍ଧି ହୋଏ ଯେବେ   ରାଜା ଦୁହିଙ୍କର ତେବେ ।
ଦେବା ନେବା ନ ଥାଇ ସେ କପାଳ ସନ୍ଧି ।

କିଛୁ ଧନ ଦେଇ କରି ଯେବେ ପ୍ରୀତି ପଣ କରି ।
ଉପହାର ନାମ ସେହି ବୋଲନ୍ତି ସନ୍ଧି ।
ସନ୍ତାନର ସନ୍ଧି ସେ ଜାଣ ।
ଯେଉଁ ପ୍ରୀତିରେ କନ୍ୟାକୁ ଦଅନ୍ତି ଦାନ । ୧୬୮ ।
ଯେତେ ଅପୁରୁଷ ପ୍ରମାଣ ସେ କାଳ ପର୍ଯ୍ୟନ୍ତେ ଜାଣ
ଦୁହିଙ୍କର ପ୍ରୟୋଜନ ସମାନ ହୋଇ ।
ସମ୍ପତ୍ତି କପତ୍ତି ହେତୁ ଯାହାରୁ ନ ଭାଙ୍ଗେ ସେତୁ
ପ୍ରବର୍ତ୍ତି ପ୍ରାୟେ ସେ ସନ୍ଧି ସଙ୍ଗତ ହୋଇ ।
ଅନ୍ୟ ଯେତେ କୁଶଳ ଜନ ।
ଏହି ସନ୍ଧି କରେ ତାର ନାମ କାଞ୍ଚନ । ୧୬୯ ।
ଭାବ ଏକ କାର୍ଯ୍ୟ ସିଦ୍ଧି ଉଦ୍ଦେଶରେ ଯେଉଁ ବଧି
କରନ୍ତି ସନ୍ଧି କୁଶଳେ ସେ ଉପନ୍ୟାସ ।
କରିଥିଲେ ଉପକାର ଏ ମୋହର ବହୁବାର
ମୋର ଉପକାର ଏ କରିବ ଅବଶ୍ୟ ।
ଏମନ୍ତ ବିଚାର ଯାହାକୁ ।
କରି ପ୍ରତୀକାର ସନ୍ଧି ବୋଲି ତାହାକୁ । ୧୭୦ ।
ଅଥବା ଏହାର ମୁହିଁ ଉପକାରକୁ କରଇ
ଅବଶ୍ୟ କରିବ ମୋର ଏ ଉପକାର ।
ଯେସନେ ରାମ ସୁଗ୍ରୀବର ପରସ୍ପରେ ଉପକାର
ହେଲା ସେରୂପେ ହୋଇଲେ ସେ ପ୍ରତିକାର ।
ଏ କାର୍ଯ୍ୟକୁ ଉଦ୍ଦେଶ କରି ।
ଯହିଁରେ କର୍ମକୁ କରି ସଂଯୋଗ ବୋଲି । ୧୭୧ ।
ଅମ୍ଭ ଦୁହିଙ୍କର ସୈନ୍ୟେ ଯେଉଁ ଯୋଦ୍ଧା ମୁଖ୍ୟମାନେ
ସେମାନେ ଏ ପ୍ରୀତି କରନ୍ତୁ ପରସ୍ପର ।

ଏରୂପରେ ପ୍ରୋତ୍ସାହନ ଯହିଁରେ ହୁଅଇ ଜାଣ
ସେ ସନ୍ଧିର ନାମ ଅଟେ ପୁରୁଷାନ୍ତର ।
କଣ୍ଟ ଭୂମି ମୂଲ୍ୟରେ ଦେଇ ।
ଉତ୍ତ ଉପୁ ପ୍ରୀତି କର ଅଦୃଷ୍ଟ ସେହି । ୧୭୨ ।
ଆପଣା ସୈନ୍ୟରେ କରି ଯେଉଁ ପ୍ରୀତିକି ଆଚରି
ତାର ନାମ ଆତ୍ମାଦିଷ୍ଟ କହେ ପଣ୍ଡିତ ।
ଉପଗ୍ରହର ଲକ୍ଷଣ କହୁଥାଇ, ତୁମ୍ଭେ ଶୁଣ
ଯହିଁରେ ସମସ୍ତ ଦେଇ ରଖେ ଜୀବତ ।
ଦେଇ କଂସା ବାସନ ହସ୍ତୀ ।
ଯହିଁ ଶିଷ୍ଟ ପ୍ରାଣ ରଖି ସେ ପରକ୍ରିୟ । ୧୭୩ ।
ସମୁଦ୍ର ସମ୍ପତ୍ତି ଦ୍ୱୀପ ଦେଇ ଯାହା କରେ ନୃପ
ସେ ସନ୍ଧି ଉଚ୍ଛିନ୍ନ ନାମ ବୋଲି ତୁ ଜାଣ ।
ସମସ୍ତ ଭୂମିକି ଦେଇ ଯେଉଁ ସନ୍ଧିକି କରଇ
ତାହାର ନାମ ତୁ ଜାଣ ପର ଭୂଷଣ ।
ପରଚ୍ଛିନ୍ନ ଧନ କାନ୍ଧରେ ।
ବହି ଦେଇ ସ୍କନ୍ଧୋପନେୟ ସେ ଯହିଁରେ । ୧୭୪ ।
ଚର୍ଚ୍ଚିବାକ କହେ ଶୁଣ କହୁଛି ମୁହିଁ ବଚନ
ଏ ଲୋକ ପର ମୋହର ଏ ମୋ ପରର ।
ଅଧୀର ଲୋକ ଯେ ତାର ଏ ଗଣନା ଯେ ଉଦାର
ଚରିତ ସମସ୍ତ ଜନ ହୁଏ ତାହାର ।
ଭେଦ ବୁଦ୍ଧି ଯେ ଲୋକ ହୋଇ ।
ସେ କାହାକୁ ନ ସହଇ କାହାକୁ ସହି । ୧୭୫ ।
ମାତୃ ପ୍ରାୟେ ପରଦାର ପର ଦ୍ରବ୍ୟ ଲୋଷ୍ଟ୍ରକାର
ସର୍ବ ଲୋକମାନଙ୍କରେ ଆତ୍ମ ପରିଏ ।

ଯେ ଜାଣଇ ସେ ଧାର୍ମିକ ଏଥିରୁ ଅନ୍ୟ ନାସ୍ତିକ
ତୁମ୍ଭେ ମହା ଧାର୍ମିକ କ ଶୁଣିଲ ଆନ୍ୟାସ୍ତେ ।
ଏଠାରେ ଯେ ଅମୃତ କାର୍ଯ୍ୟ ।
ତାହା ତୁମ୍ଭେ ଉପଦେଶ ଦଅତ ଆଜ । ୧୭୬ ।
ଦୀର୍ଘଦର୍ଶୀ କହେ ବାଣୀ ଏରୂପେ କହ କି ପୁଣି
ଦେଖ ମନପୀଡ଼ା ବ୍ୟାଧି ପଡ଼ନ୍ତ ପରେ ।
ଥାଇ ଅବା ଜାଇ ପର ଏ ଶରୀର ଯିବ ସର
ଯେ ଶରୀର ପାଇଁ କ କେ ଅଧର୍ମ କରେ ।
ଯେ କରଇ ସେ ବଡ ମୂର୍ଖ ।
ଦେଖ ତୁ ଯେଉଁ ଦେହରେ ଅନେକ ଦୁଃଖ । ୧୭୭
ଦେହମାନଙ୍କର ଜୀବ ସର୍ବଦା ତ ନ ରହିବ
ଜଳରେ ପ୍ରତିବିମ୍ବିତ ଚନ୍ଦ୍ର ପରାଏ ।
ଏହା ବିଚାର ସୁଜନ କରନ୍ତି ସଦା କଲ୍ୟାଣ
ଯାହା ଆଚରଣ କଲେ ଦେହ ନ ପାଏ ।
ମୃଗତୃଷ୍ଣା ସମ ଜଗତ ।
ଧର୍ମିଜନଠାରେ ଦଅ ସୁଜନେ ଚିତ୍ତ । ୧୭୮ ।
ତେଣୁ ମୋ ସମ୍ମତ ଯେନ କାର୍ଯ୍ୟ କର ତୁମ୍ଭେ ବେନ
ସହସ୍ରେ ଅଶ୍ୱମେଧକୁ ସତ୍ୟକୁ ଆଣି ।
ତୁଳରେ ଯେବେ ତୁଳିବ ସତ୍ୟ ଯେ ଅଧିକ ହେବ
ଏଣୁ ସତ୍ୟ ଅଗ୍ରକର ଏ ରାଜ ବେନେ ।
ଯେନ କର କାଞ୍ଚନ ସନ୍ଧି ।
ଯେଉଁରୂପେ ଦୁଇ ମନ ହୋଇବ ଛନ୍ଦି । ୧୭୯ ।
ଚକ୍ରବାକ ବୋଲେ ହେଉ ତୁମ୍ଭେ ଯା କହିଲ ଆଉ
କେ ଆନ ମନ୍ତ୍ରୀ କହିବ ମୁହିଁ ଜାଣଇଁ ।

ଏହା କହି ବସ୍ତ୍ର ରତ୍ନ   କରେ ଯେତ୍ନେ ଅଛ ଯନ୍ତ୍ର
ଭର ସେ ଦୂରଦର୍ଶୀ ମନ୍ତ୍ରିକ ପୂଜଇ ।
ଗୃଧ୍ର ହୃଷ୍ଟଚିତ୍ତ ହୋଇଲା ।
ଚକ୍ରବାକ ଯେନ ବନ୍ଧି ସନ୍ଧିରେ ଗଲା । ୧୮୦ ।
ଏଥୁଅନ୍ତେ ଚିତ୍ରବର୍ଣ୍ଣ   ଶୁଣିଣ ଗୃଧ୍ର ବଚନ
ସର୍ବଜ୍ଞ ମନ୍ତ୍ରୀକ ବହୁ ସତ୍କାର କଲା ।
ସଙ୍ଗେ ସମ୍ଭାଷଣ କରି   ସନ୍ଧିକୁ ସ୍ୱୀକାର କରି
ଶିଷ୍ଟ ଲୋକ ସଙ୍ଗେ ଦେଇ ମେଲାଣି କଲା ।
ଚକ୍ରବାକ ହୋଇ ସନ୍ତୋଷ ।
ରାଜହଂସ କଟକରେ ହେଲା ପ୍ରବେଶ । ୧୮୧ ।
ଦୂରଦର୍ଶୀ ରାଜା ଅଗ୍ରେ   କହଇ ଅଧିକ ବ୍ୟଗ୍ରେ
ଆମ୍ଭମାନଙ୍କର କାର୍ଯ୍ୟ ସିଦ୍ଧ ହୋଇଲା ।
ବର୍ଦ୍ଧମାନ ବନ୍ଧ୍ୟାଚଳ   ଯିବା ଚଞ୍ଚଳରେ ଚାଲ
ଏମନ୍ତ ଶୁଣିଣ ରାଜା ଚାଲ ବୋଇଲା ।
ସ୍ୱ ସ୍ଥାନେ ପ୍ରବେଶ ହୋଇଲେ ।
ସିଦ୍ଧେ ମନୋରଥ ପାଇ ସୁଖେ ରହିଲେ । ୧୮୨ ।
ବିଷ୍ଣୁଶର୍ମା କହେ ତୁମ୍ଭେ   ଅଉ କ ପଚାର ଅମ୍ଭେ
କହିବୁଁ ଏମନ୍ତ ଶୁଣି ରାଜ ତନୟ ।
କହନ୍ତି ହେ ଦ୍ୱିଜବର   ଜାଣିଣ ରାଜ ବେଭାର
ଆମ୍ଭେମାନେ ସୁଖୀ ହେଲୁଁ ତୁଅ ସଦୟ ।
ବିଷ୍ଣୁଶର୍ମା ପୁଣି ବଚନ ।
କହିଲେ ତୁମ୍ଭର ମନେ ରହୁ ଏମାନ । ୧୮୩ ।
ଯେ କେହି ପଣ୍ଡିତଜନେ   ଏ କଥା ଧରିଣ ମନେ
କଣ୍ଠରେ ସର୍ବଦା ଧରିଅଛନ୍ତି ସେହି ।

ଷଣ୍ଢର ମଧ୍ୟରେ ଥାଇ   ରାଜାଠାରେ ପୂଜା ପାଇ
ନିତ୍ୟାନନ୍ଦ ରୂପ ହୋଇ ବସନ୍ତି ସେହି ।
ଏହି କଥା ଯେହୁ ଶୁଣନ୍ତି ।
ଦୁର୍ବୁଦ୍ଧି ସେ ହୋଇଥିଲେ ସୁବୁଦ୍ଧି ହୋଇ । ୧୮୪ ।

ଇତି ଶ୍ରୀ ହିତୋପଦେଶେ ମିତ୍ରଭାଷାରେ ସନ୍ଧି କଥନେ ଚତୁର୍ଥ କଥା ସଂଗ୍ରହଃ

---

ORISSA MISSION PRESS,—MESSRS. VAUGHAN AND YOUNG.